ଖୋର୍ଦ୍ଧା ଇତିହାସର ଅନ୍ତୁଡ଼ିଶାଳ

# ବରୁଣେଇ





ସତ୍ୟବାଦୀ ବଳିଆରସିଂହ

ଖୋର୍ଦ୍ଧା ଇତିହାସର ଅନ୍ତୁଡ଼ିଶାଳ

# ବରୁଣେଇ

ଲେଖକ :
**ସତ୍ୟବାଦୀ ବଳିଆରସିଂହ**
'ବିଶ୍ୱାତ୍ମା', ଏମ୍-୨୩
ବକ୍ସି ଜଗବନ୍ଧୁ ନଗର(ବିଡିଏ କଲୋନୀ), ଖୋର୍ଦ୍ଧା
ଶୂନ୍ୟଭାଷ ୯୨୩୭୦୮୯୫୦୯

ପ୍ରକାଶକ :
**କୃଷ୍ଣଚନ୍ଦ୍ର ହରିଚନ୍ଦନ**
ସାଧାରଣ ସଂପାଦକ, କଳିଙ୍ଗ ପାଇକ ସଂଗଠନ, ଖୋର୍ଦ୍ଧା
ଶୂନ୍ୟଭାଷ: ୮୯୧୭୩୮୭୪୦୩

ବିତରକ : ବିଶ୍ୱାତ୍ମା ପ୍ରକାଶନୀ, ଖୋର୍ଦ୍ଧା

ପ୍ରଥମ ସଂସ୍କରଣ : ୨୭ ମାର୍ଚ୍ଚ, ୨୦୨୧

ଡିଟିପି : ପ୍ରଶାନ୍ତ କୁମାର ଦାଶ
ଅଳଙ୍କରଣ : ଯୋଗେନ୍ଦ୍ର ରାଉତ

ମୁଦ୍ରଣ : ଭଗବତୀ ପ୍ରିଣ୍ଟର୍ସ, ଭୁବନେଶ୍ୱର

ମୂଲ୍ୟ : ୧୨୦/-


##

**KHORDHA ITIHASARA ANTUDISHALA**

**BARUNEI**

**Satyabadi Baliarsingh**
**'Viswatma',** M-23, Bakshi Jagabandhu Nagar (BDA Colony), Khordha
Mob. : 9237089509, Email: satyabadi_baliarsingh@rediffmail.com

Price : ₹ **120.00**

# ଆତ୍ମକଥନିକା



ଗଜପତି ରାଜା ପୁରୁଷୋତ୍ତମ ଦେବ ଦାକ୍ଷିଣାତ୍ୟ ଅଭିଯାନରେ ଯାଇ ବିଜୟନଗର ରାଜ୍ୟରୁ ଆଣିଥିବା ଦେବୀ ବରୁଣେଇ ଓ ଅରୁଣେଇ (ପରେ କରୁଣେଇ) ଆଜି ଖୋର୍ଦ୍ଧା ରାଜାଙ୍କର ଇଷ୍ଟଦେବୀ । ଦେବୀଙ୍କ ମହିମାର ପ୍ରଚାର ପ୍ରସାର ଯେତିକି ବିସ୍ତାରିତ, ଖୋର୍ଦ୍ଧାର ରଣରଙ୍ଗୀ ପାଇକଙ୍କ ବୀରତ୍ୱର ଗରିମା ଉଦ୍‌ବେଳନରେ ସେତିକି ପୁଲକିତ । ବରୁଣେଇ-କରୁଣେଇ ଦେବୀ, ପର୍ବତ ତଥା ପାଦଦେଶରେ ସ୍ଥାପିତ ଖୋର୍ଦ୍ଧା ରାଜାଙ୍କ ଭଗ୍ନ ଦୁର୍ଗର ଅନୁଶୀଳନ ଇତିହାସର ଏକ ସ୍ୱର୍ଣ୍ଣିମ ଅଧ୍ୟାୟ । ବରୁଣେଇର ମନୋରମ ଭୌଗୋଳିକ ସ୍ଥିତି, ପ୍ରାଚୀନତା, ପୁରାଣବର୍ଣ୍ଣିତ କାହାଣୀ ତଥା ପାଇକମାନଙ୍କ ବୀରତ୍ୱଗାଥା ମନରେ ଅଭିନବ ଜାଗରଣ ସୃଷ୍ଟି କରେ । ଅତୀତର ଗୌରବୋଜ୍ଜ୍ୱଳ ଇତିହାସକୁ ପାଶୋରି ଦେଇଥିବା ମଣିଷ ପାଇଁ ଏହା ନିଶ୍ଚିତ ରୋମନ୍ଥନର ବିଷୟ ।

ତ୍ରେତୟା ଯୁଗରେ ବନବାସ କାଳରେ ପ୍ରଭୁ ଶ୍ରୀରାମ, ଭ୍ରାତା ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କ ସହ ଆସିଥିଲେ ବରୁଣେଇ ପର୍ବତକୁ । ତା'ର ସନ୍ତକ ଭାବେ ରହିଛି ଶ୍ରୀରାମ ପଥର ଓ ଟୀର ସ୍ୱଚ୍ଛ ନୀର ପ୍ଲାବିତ ସୀତାକୁଣ୍ଡ । ଦ୍ୱାପର ଯୁଗରେ ପଞ୍ଚୁପାଣ୍ଡବଙ୍କ ଅଜ୍ଞାତବାସକୁ ଅବଲୋକନ କଲେ ତା'ର ମୂକସାକ୍ଷୀ ଭାବେ ରହିଛି ପାଣ୍ଡବ ଗୁମ୍ଫା । ଶହେରୁ ଊର୍ଦ୍ଧ୍ୱ ଲୋକ ବସିବା ଭଳି ଏହି ସ୍ଥାନ ଏକଦା ପାଇକ ବିଦ୍ରୋହ ସମୟରେ ଥିଲା ମନ୍ତ୍ରଣାସ୍ଥଳ । ପ୍ରତ୍ନତାତ୍ତ୍ୱିକ ବିଭବର ଆଶାନୁରୂପ ଗବେଷଣା କରାଯାଇପାରିନଥିଲେ ମଧ୍ୟ ଆବିଷ୍କୃତ ଲିପି ପଠନରୁ ଜଣାଯାଏ ଯେ, ଏହା ବୌଦ୍ଧ ଓ ଜୈନ ସନ୍ୟାସୀମାନଙ୍କର ବିଶ୍ରାମସ୍ଥଳୀ ଥିଲା ।

ପାରମ୍ପରିକ ରଜଯାତ୍ରା ଓ ଦଶହରା ସମୟରେ ମୁଖରିତ ହୋଇଉଠେ ବରୁଣେଇ । ନୂଆବର୍ଷର ଆରମ୍ଭର କେତେ ଦିନ ଓ ଛୁଟିଦିନମାନଙ୍କରେ ବଣଭୋଜିର ମହକ ଆଗନ୍ତୁକମାନଙ୍କୁ ଅପୂର୍ବ ଉନ୍ମାଦନାରେ ପୁଲକିତ କରିଦିଏ । ୧୯୯୮ ଜାନୁଆରୀ ପ୍ରଥମ ସପ୍ତାହରେ ଏସିଆର ସର୍ବପ୍ରଥମ ସ୍କାଉଟ୍ ଜାମ୍ବୋରୀ ମେଳା, ଭଗ୍ନ ଖୋର୍ଦ୍ଧା ଦୁର୍ଗ ପରିସରରେ ୧୯୯୨ ଏପ୍ରିଲ ୧ରୁ ପାଂଚ ଦିନ ଧରି ରାଜ୍ୟସ୍ତରୀୟ ପାଇକ ସମାରୋହ ତଥା ଉତ୍କଳ ଦିବସ ପାଳନ ଏବଂ ୨୦୧୯ ଡିସେମ୍ବର ୮ ତାରିଖରେ ପାଇକ ସ୍ମାରକୀସ୍ଥଳର ଶିଳାନ୍ୟାସ ବାସ୍ତବରେ ଥିଲା କୀର୍ତ୍ତି ବିଜଡ଼ିତ ଗୋଟିଏ ଗୋଟିଏ ଅଭୁଲା ସ୍ମୃତି । ପାଇକ ବିଦ୍ରୋହର ୨୦୦ବର୍ଷ ପୂର୍ତ୍ତି ଅବସରରେ ଆଶା କରାଯାଉଥିଲା ଭଗ୍ନ ଦୁର୍ଗର ବିକାଶ ହେବ ଏବଂ

ସୌନ୍ଦର୍ଯ୍ୟ ପରିପାଟୀରେ ଏହା ଝଲସି ଉଠିବ । କିନ୍ତୁ ସେଭଳି କିଛି ହୋଇନାହିଁ । ଦୃଶ୍ୟମାନ ଭଗ୍ନଗଡ଼ର ପ୍ରସ୍ତରଖଣ୍ଡ ଓ ଭଗ୍ନାବଶେଷ ଅତୀତ ବୀରତ୍ୱଗାଥାର ନିଛକ ସ୍ୱାକ୍ଷର ଭାବେ କେବଳ ଉଦ୍‌ଭାସିତ ହେଉଛି ।

ଚାରିବର୍ଷ ତଳେ ପାଣ୍ଡବ ଗୁମ୍ଫା ପର୍ଯ୍ୟନ୍ତ ରାସ୍ତା ଏବଂ ଖୋର୍ଦ୍ଧା ଦୁର୍ଗରୁ ବରୁଣେଇ ପର୍ଯ୍ୟନ୍ତ ରାସ୍ତା ନିର୍ମାଣ ଆରମ୍ଭ ହୋଇ ଏବେ ପ୍ରାୟତଃ ପୂର୍ଣ୍ଣାଙ୍ଗ ହୋଇଛି । କଳିଙ୍ଗ ପାଇକ ସଂଗଠନ ଓ ନ୍ୟୁ ଥିଙ୍କିଙ୍ଗ ଫୋରମ୍ ଏ କ୍ଷେତ୍ରରେ ପ୍ରୟାସ ଜାରି ରଖିଥିଲେ । ବରୁଣେଇ ପୀଠ ଏକ ପର୍ଯ୍ୟଟନସ୍ଥଳୀ ହୋଇଥିବାରୁ ଜନ ସମାଗମ ବୃଦ୍ଧି ହେବା ସହିତ ଅନିସନ୍ଧିତ୍ସୁ ପର୍ଯ୍ୟଟକମାନେ ବରୁଣେଇକୁ ନେଇ ଅଧିକରୁ ଅଧିକ ତଥ୍ୟ ଜାଣିବାକୁ ଚାହିଁଥାନ୍ତି । ତେଣୁ ସମସ୍ତ ବିଷୟକୁ ଆଧାର କରି ଓଡ଼ିଆ ଭାଷାରେ ପୁସ୍ତକଟିଏ ଆବଶ୍ୟକ ଥିଲା । ମୋର ପୁତ୍ର ସମରେନ୍ଦ୍ର ବଳିଆରସିଂହ ବରୁଣେଇକୁ ନେଇ ପୁସ୍ତକଟିଏ ରଚନା କରିବାକୁ ମୋତେ ବାରମ୍ବାର ମନେ ପକାଇବାରୁ ଏ କ୍ଷେତ୍ରରେ ଆଗେଇ ଆସିଲି । ପୂର୍ବରୁ 'ଆମଗିସେତ୍ୟ' ଦ୍ୱାରା ପ୍ରକାଶିତ "ପର୍ଯ୍ୟଟନରେ ଓଡ଼ିଶାରେ ଶାକ୍ତ ଓ ଶୈବପୀଠ" ପୁସ୍ତକରେ ବରୁଣେଇକୁ ନେଇ ପ୍ରସ୍ତୁତ ସନ୍ଦର୍ଭ ଆଦୃତ ହୋଇଥିଲା । ଏହି ପୁସ୍ତକ ରଚନା ପାଇଁ ବିଭିନ୍ନ ପୁସ୍ତକରୁ ତଥ୍ୟ ଆହରଣ କରିଛି । ସାହିତ୍ୟର ଧାରେ ଧାରେ, କାବ୍ୟର ଛନ୍ଦେ ଛନ୍ଦେ ମୃତ ଗୌରବ, ହୃତ ଗୌରବକୁ ମନେ ପକାଇ ଯେଉଁ କବିମାନେ ସଙ୍ଗୀତ ସର୍ଜନା କରିଛନ୍ତି, ସେଥିରୁ ଯାହା ଓଡ଼ିଶାର ପୁରପଲ୍ଲୀରେ ଉନ୍ମାଦନା ସୃଷ୍ଟି କରିଥିଲା ତା'ର କିଛି କିଛି ନିର୍ଯ୍ୟାସ ଠାଏ ଠାଏ ସ୍ଥାନିତ କରିଛି ।

ଏହି ପୁସ୍ତକ ରଚନା ପାଇଁ ଶିକ୍ଷାବିତ୍ ଭୀମସେନ ପ୍ରଧାନ, କାଳିଚରଣ ଜୟସିଂହ, ଆଇନଜୀବୀ ଶିବସୁନ୍ଦର ପଟ୍ଟନାୟକ, ବୈଦ୍ୟନାଥ ବରାଳ, ଅବସରପ୍ରାପ୍ତ ଫ୍ଲାଇଟ୍ ଲେଫ୍ଟନାଣ୍ଟ ବିଦ୍ୟାଧର ଲେଙ୍କା, ସମାଜସେବୀ ରାମଶଙ୍କର, ଅଜୟ କୁମାର ମାନ୍ଧାତା, କବି ରାଜକିଶୋର ପାଣିଗ୍ରାହୀ, ରମେଶ ଚନ୍ଦ୍ର ମଙ୍ଗରାଜ, ସୂର୍ଯ୍ୟ ମହାନ୍ତି, ଖୋର୍ଦ୍ଧା ଆଇନ ମହାବିଦ୍ୟାଳୟର ସଂପାଦକ ସୁଧୀର ମାନସିଂହ, ଯୋଗ ପ୍ରଶିକ୍ଷିକା ଇତିଶ୍ରୀ ସାହୁ, ଗୋବିନ୍ଦ ଚନ୍ଦ୍ର ମହାରଣା, ବିଭୁପ୍ରସାଦ ହରିଚନ୍ଦନ, ଶାନ୍ତିଲତା ଦେବୀଙ୍କ ଉତ୍ସାହପ୍ରଦ ପ୍ରେରଣା ପାଇଁ ସାଧୁବାଦ ଜଣାଉଛି । ପୁସ୍ତକର ପ୍ରଚ୍ଛଦ ତଥା ସାମଗ୍ରିକ ରୂପାୟନ ପାଇଁ ଗାଳ୍ପିକ ସୁନୀଲ ଘୋଷଙ୍କ ଅନୁଚିନ୍ତା ଓ ଦିଗ୍‌ଦର୍ଶନ ବେଶ୍ ପ୍ରେରଣାଦାୟକ । ସେଥିପାଇଁ ତାଙ୍କୁ କୃତଜ୍ଞତା ଜଣାଉଛି । ବହିରେ ସନ୍ନିବେଶିତ ଲେଖାଗୁଡ଼ିକ 'ଓଡ଼ିଶା ଏକ୍ସପ୍ରେସ୍' ଦୈନିକ ସମ୍ବାଦପତ୍ରରେ ସାପ୍ତାହିକ ସ୍ତମ୍ଭ 'ଇତିହାସର ଇତିକଥା'ରେ ପ୍ରକାଶିତ ହୋଇଆସିଛି । ଏହି ପରିପ୍ରେକ୍ଷୀରେ ଏହାର ସମ୍ପାଦକ ଉମାପଦ ଘୋଷ, କାର୍ଯ୍ୟନିର୍ବାହୀ ସମ୍ପାଦକ ଅମ୍ବିକା ପ୍ରସାଦ ଦାସ ତଥା 'ଓଡ଼ିଶା ଏକ୍ସପ୍ରେସ୍' ପରିବାରର ସମସ୍ତ ସଦସ୍ୟମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇବା ସହ ପୁସ୍ତକର ପ୍ରକାଶନ ପାଇଁ କଳିଙ୍ଗ ପାଇକ ସଂଗଠନର ସାଧାରଣ ସମ୍ପାଦକ କୃଷ୍ଣଚନ୍ଦ୍ର ହରିଚନ୍ଦନଙ୍କୁ ସାଧୁବାଦ ଜଣାଉଛି ।

**ସତ୍ୟବାଦୀ ବଳିଆରସିଂହ**



# ପ୍ରକାଶକଙ୍କ କଲମରୁ

**ଖୋର୍ଦ୍ଧା ଇତିହାସର ପାଦଟୀକା-ବରୁଣେଇ :** ବିଶିଷ୍ଟ ଐତିହାସିକ ତଥା ଗବେଷକ ଶ୍ରୀଯୁକ୍ତ ସତ୍ୟବାଦୀ ବଳିଆରସିଂହଙ୍କର ଏକ ଅନବଦ୍ୟ ସୃଷ୍ଟି । ଏଥିରେ ଏଭଳି ଅନେକ ତଥ୍ୟ ସନ୍ନିବେଶିତ ହୋଇଛି, ଯାହା କେବେ ବି ଆଲୋଚନାକୁ ଆସିନାହିଁ। ଥରେ ପଢ଼ିବା ଆରମ୍ଭ କଲେ ଶେଷ ନ ହେବା ପର୍ଯ୍ୟନ୍ତ ରହିହୁଏ ନାହିଁ । ଦୈନିକ ସମ୍ବାଦପତ୍ର 'ଓଡ଼ିଶା ଏକ୍ସପ୍ରେସ୍'ରେ 'ଇତିହାସର ଇତିକଥା' ସ୍ତମ୍ଭରେ ଏହା ପ୍ରକାଶ ହୋଇ ଆସୁଥିଲା । ପ୍ରତ୍ୟେକ ଥର ନୂଆ ନୂଆ ତଥ୍ୟ ସ୍ଥାନିତ ହେଉଥିବାରୁ ପାଠକମାନଙ୍କର ଆଗ୍ରହ ତଥା ଉତ୍କଣ୍ଠା ବଢ଼ି ଚାଲିଥିଲା । ଏଥିରେ ସ୍ଥାନ ପାଇଥିବା ଛଅଟି ଅଧ୍ୟାୟ ମଧ୍ୟରୁ କପିଳ ସଂହିତାରେ ବରୁଣୀ ପର୍ବତର ବର୍ଣ୍ଣନା ସଂପର୍କରେ ମୁଁ ଆଦୌ ଅବଗତ ନ ଥିଲି । ପାହାଡ଼ର ବିଭିନ୍ନ ଅଂଶ ତଥା ପାହାଡ଼ ଖୋଲର ନାମକରଣ ନେଇ ଅନେକ ସ୍ଥାନୀୟ ଲୋକ ମଧ୍ୟ ଅଜ୍ଞାତ । ପୁସ୍ତକରେ ସ୍ଥାନିତ ବହୁ ବୀରଭଦ୍ରବ୍ୟଂଗକ ଜାତୀୟତାବୋଧ କବିତା ପାଠକଙ୍କ ମନରେ ଉଦ୍ଦାମତା ସୃଷ୍ଟି କରିବ ।

ବରୁଣେଇ ପାଇକ ସ୍ମାରକୀସ୍ଥଳ ଓ ଐତିହ୍ୟ ଅଧ୍ୟାୟ ପାଠ କରି କଳିଙ୍ଗ ପାଇକ ସଂଗଠନର ଙ୍ଗ ଶିଶିର କୁମାର ନାୟକ, ଉପଦେଷ୍ଟା ଭୀମସେନ ପ୍ରଧାନ, ତାପଙ୍ଗ ଦଳବେହେରା ସ୍ମୃତି ପରିଷଦର ଶେଖ୍ ରମଜାନ୍ ଖାଁ ଓ ପିଣ୍ଡିକି ବାହୁବଳେନ୍ଦ୍ର ସ୍ମୃତି କମିଟିର ଅମରେନ୍ଦ୍ର ମହାପାତ୍ର ପୁସ୍ତକ ପ୍ରକାଶନ ନେଇ ମତ ରଖିଥିଲେ । ଏହା ମୋତେ ଉତ୍ସାହିତ କରିଥିଲା । ବରୁଣେଇକୁ ପର୍ଯ୍ୟଟନରେ ଆସୁଥିବା ବ୍ୟକ୍ତିମାନଙ୍କ ପାଇଁ ଏହି ପୁସ୍ତକ ଉପାଦେୟ ହେବା ସହିତ ଐତିହ୍ୟପ୍ରେମୀ, ଗବେଷକ ତଥା ଛାତ୍ରଛାତ୍ରୀମାନଙ୍କ ପାଇଁ ମଧ୍ୟ ଉପଯୋଗୀ ହେବ । ଏଭଳି ଅମୂଲ୍ୟ ଦସ୍ତାବିଜ୍ ବହୁଳ ଭାବରେ ପାଠକୀୟ ସ୍ୱୀକୃତି ପାଇବ ବୋଲି ଆଶା କରେ ।

**କୃଷ୍ଣଚନ୍ଦ୍ର ହରିଚନ୍ଦନ**
**ସାଧାରଣ ସଂପାଦକ**
**କଳିଙ୍ଗ ପାଇକ ସଂଗଠନ, ଖୋର୍ଦ୍ଧା**

## ଭିତର ପୃଷ୍ଠାରେ

# ଅଧ୍ୟାୟ # ୧

# ଖୋର୍ଦ୍ଧାର ରାଷ୍ଟ୍ରଦେବୀ ବରୁଣେଇ

"ଖୁର୍ଦ୍ଧା ଯା  ବୀରଭୂମି- ବିଦିତ ତରା ନିତ୍ୟ ଧନ୍ୟା ଶ୍ରିୟାଢ଼୍ୟା
ସସ୍ମାଙ୍କ ପୂର୍ବ ଭାସ୍ୱତ୍ ପୁରୁ ପୁରୁଷ ମହାବାହୁ ବୀର୍ଯ୍ୟାଜିତାୟାଃ
ଉର୍ବ୍ୟାକାଳିଙ୍ଗଭୂମେର୍ବହୁଜନ  ବସତେଃସ୍ୱାବଲମ୍ବିତ୍ୱ  ରକ୍ଷା
ଦୀକ୍ଷାର୍ଥଂ ରାଜତେ ନସ୍ଥିତନୟ ତନୟାନ୍‌ସନ୍ତତଂ ପ୍ରେରୟନ୍ତୀ ।"
(ରାଜଗୁରୁ ପରମଲକ୍ଷ୍ମୀ)

"ଆମର ଏହି ପିତୃଭୂମି ଖୋର୍ଦ୍ଧା ଯିଏ ଆମକୁ ଆମର ପିତୃପୁରୁଷଙ୍କ ବିଶାଳ କଳିଙ୍ଗ ଭୂମିର ସ୍ୱାତନ୍ତ୍ୟ ରକ୍ଷା ପାଇଁ ଚିରଦିନ ପ୍ରେରଣା ପ୍ରଦାନ କରିଆସୁଅଛି ସେ ଧନ୍ୟ ଅଟେ ।"

ସମଗ୍ର ଉତ୍କଳରେ ବୀରଭୂମି ଭାବରେ ଖୋର୍ଦ୍ଧାର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି । ବିଶ୍ୱ ଇତିହାସର ଲୋମହର୍ଷଣକାରୀ କଳିଙ୍ଗଯୁଦ୍ଧ, ମହାମହିମ ସମ୍ରାଟ ଐର ଖାରବେଳଙ୍କ ଅନନ୍ୟ ଅସାଧାରଣ ଦିଗ୍‌ବିଜୟ, ଗଜପତି କପିଳେନ୍ଦ୍ର ଦେବଙ୍କର ବଙ୍ଗ, ଗୋଲକୁଣ୍ଡା, ବିଜୟନଗର, କର୍ଣ୍ଣାଟକ ବିଜୟ ସର୍ବୋପରି ଭାରତର ପ୍ରଥମ ଗଣବିପ୍ଲବ ପାଇକ ବିଦ୍ରୋହ ଏହି ବୀରଭୂମିରେ ହିଁ ସଂଗଠିତ ହୋଇଥିଲା; ଯେତେବେଳେ ସମଗ୍ର ଭାରତବର୍ଷ ଯବନ ଅତ୍ୟାଚାରରେ ଥରହର ହେଉଥିଲା, ସେତେବେଳେ ଏହି ସମରକୁଶଳୀ ଜାତି ନିଶଙ୍କ ଚିତ୍ତରେ ରାଜତ୍ୱ କରି ପୁରୀ, କୋଣାର୍କ, ଭୁବନେଶ୍ୱରରେ ବିଶ୍ୱବିଖ୍ୟାତ ତୁଙ୍ଗ ମନ୍ଦିରମାନ ନିର୍ମାଣ କରି ଅକ୍ଷୟକୀର୍ତ୍ତି ରଖିଯାଇଛନ୍ତି । ବୀରତ୍ୱ ବ୍ୟତୀତ ଧର୍ମ, ଦର୍ଶନ, ସାହିତ୍ୟ, ସଙ୍ଗୀତ ଓ କଳା କ୍ଷେତ୍ରରେ ଖୋର୍ଦ୍ଧାର ସ୍ୱାତନ୍ତ୍ୟ ସ୍ୱୀକୃତ। ଏହି ସ୍ଥାନର ଏହି ମହିମାମୟ ସ୍ୱାତନ୍ତ୍ୟକୁ ଲକ୍ଷ୍ୟ ରଖି ବିଶ୍ୱମ୍ଭର ଦାସ 'ବିଚିତ୍ର ଭାରତ'ରେ ଲେଖିଛନ୍ତି-

"ପୃଥୀମଣ୍ଡଳ ସାରଭୂମି ଓଡ଼ିଶା ଖୋରଧା ନାମେ ନଗର
ତହିଁରେ ନୃପତି ଶ୍ରୀ ବୀରକଶେରୀ ପ୍ରତାପରେ ବୀରବର ହେ
ଦୟାବନ୍ତ ଆରତ ଜନର
ତହୁଁ ଶତ୍ରୁମିତ୍ର ଏକାକାର ହେ ।"

ପ୍ରଭୁ ଜଗନ୍ନାଥଙ୍କର ସ୍ୱତ୍ୱାଧିକାରୀ ଭାବରେ ଏହି ରାଜବଂଶର ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି। ସମଗ୍ର ଭାରତବର୍ଷରୁ ନରପତି, ଅଶ୍ୱପତି, ଛତ୍ରପତି ପ୍ରଭୃତି ସମ୍ମାନନୀୟ ରାଜକୀୟ ପଦବୀଗୁଡ଼ିକ ମର୍ଯ୍ୟାଦା ହରାଇଥିବା ବେଳେ 'ଗଜପତି' ଶବ୍ଦର ଏକ ଗୌରବୋଜ୍ଜ୍ୱଳ ସ୍ଥିତି ଏବେବି ସଜୀବ ରହିଛି ।

ଖୋର୍ଦ୍ଧା ରାଜ୍ୟ ସୃଷ୍ଟି ଓ ଖୋର୍ଦ୍ଧା ଦୁର୍ଗ ପ୍ରତିଷ୍ଠା ବେଳକୁ ବିଶାଳ ଉତ୍କଳ ସାମ୍ରାଜ୍ୟର ପାରମ୍ପରିକ ରାଜଧାନୀ କଟକ ବାରବାଟୀ ଦୁର୍ଗ ଆଫଗାନ୍ ଓ ପରେ ମୋଗଲମାନଙ୍କ ଅଧିକାରକୁ ଚାଲିଯାଇଥିଲା । ଉତ୍କଳ ସାମ୍ରାଜ୍ୟର ପତନ ପରେ ପରେ ଗୋଦାବରୀ ନଦୀଠାରୁ ଇଚ୍ଛାପୁର ପର୍ଯ୍ୟନ୍ତ, କାଠଯୋଡ଼ି ନଦୀଠାରୁ ହୁଗୁଳି ନଦୀ ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ ପ୍ରଥମେ ଆଫଗାନ ଓ ପରେ ମୋଗଲମାନଙ୍କ ଶାସନାଧୀନ ହେଲା । ଅବଶିଷ୍ଟ ଉପକୂଳବର୍ତ୍ତୀ ଅଞ୍ଚଳ ଖୋର୍ଦ୍ଧା ରାଜାଙ୍କ ଅଧିକାରଭୁକ୍ତ ହେଲା । ଇଂରେଜମାନଙ୍କ ଖୋର୍ଦ୍ଧା ଅଧିକାର ପରେ ୧୮୧୭ ଖ୍ରୀଷ୍ଟାବ୍ଦରେ ପାଇକ ବୀର ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକ ବିଦ୍ରୋହ ସଂଘଟିତ ହୋଇଥିଲା । ପାଇକ ବିଦ୍ରୋହ ଥିଲା ସ୍ୱାଧୀନତା ପାଇଁ ଭାରତବର୍ଷର ପ୍ରଥମ ସଶସ୍ତ୍ର ଗଣବିପ୍ଳବ । ଏହାପରେ ତାପଙ୍ଗ ଦଳବେହେରାଙ୍କ ଇଂରେଜ ବିରୋଧରେ ସଂଗ୍ରାମ (୧୮୨୭), କୃତ୍ତିବାସ ପାଟ୍ଟଶାଣୀଙ୍କ ନେତୃତ୍ୱରେ ବାଣପୁର ବିଦ୍ରୋହ(୧୮୩୬) ବିଧର୍ମୀ ବିଜେତାମାନଙ୍କ ବିରୋଧରେ ସାମୟିକ ସଂଗ୍ରାମ । ଯଦି ଖୋର୍ଦ୍ଧା ରାଜ୍ୟ ସୃଷ୍ଟି ହୋଇ ଖୋର୍ଦ୍ଧା ଦୁର୍ଗ ପ୍ରତିଷ୍ଠା ହୋଇନଥାନ୍ତା, ତେବେ ଭାରତର ପୂର୍ବ ଉପକୂଳ (ବଙ୍ଗରୁ ଆନ୍ଧ୍ର-ଢାକାରୁ ହାଇଦ୍ରାବାଦ ପର୍ଯ୍ୟନ୍ତ) ମୋଗଲ କବଳରେ କବଳିତ ହୋଇ ଲାଲ ହୋଇଯାଇଥାନ୍ତା । ବିଧର୍ମୀ ଯବନମାନଙ୍କ ପ୍ରଭାବରୁ ମାତୃଭୂମିକୁ ରକ୍ଷା କରିବାକୁ ଯାଇ ଖୋର୍ଦ୍ଧାମାଟି ଅତୀତରେ ବାରମ୍ବାର ଶତ୍ରୁ ରକ୍ତ ଓ ସ୍ୱପାଇକବାହିନୀର ଉଷ୍ଣ ଶୋଣିତରେ ଲାଲ ହୋଇଛି। ଖୋର୍ଦ୍ଧା ରାଜାଙ୍କର ଇଷ୍ଟଦେବୀ ତଥା ଯୁଦ୍ଧଦେବୀ ମା' ବରୁଣାଇ ସଦାସର୍ବଦା ସହାୟ ହୋଇଛନ୍ତି। ସୃଷ୍ଟି ଆରମ୍ଭ କାଳରୁ କାୟା ବିସ୍ତାର କରିଆସିଥିବା ତ୍ରେତୟା ଓ ଦ୍ୱାପର ଯୁଗର ଶ୍ରୀରାମ ଓ ପାଣ୍ଡବଙ୍କ ମହିମା ବର୍ଣ୍ଣନା କରୁଥିବା ବରୁଣେଇ ପାହାଡ଼ ବୁକୁରେ ଖୋର୍ଦ୍ଧା ରାଜାଙ୍କ ଯୁଦ୍ଧଦେବୀ ମା' ବରୁଣେଇ ଓ ଅରୁଣେଇ ପାଇକମାନଙ୍କ ଲୋମଟାଙ୍କୁରା ଇତିହାସର ସ୍ମୃତି ମାନସପଟଳରେ ଜାଗ୍ରତ କରୁଛନ୍ତି ।

ପର୍ବତର ନାମ ବାରୁଣୀ ପର୍ବତ ଥିବାବେଳେ ଏଠାରେ ଥିବା ଦେବୀ ବରୁଣେଇଙ୍କ ନାମାନୁସାରେ ଲୋକେ ବରୁଣେଇ ପର୍ବତ କହିଥାନ୍ତି । କେହି କେହି କହିଥାନ୍ତି ବରୁଣେଇ ଠାକୁରାଣୀ ହେଉଛନ୍ତି ଖୋର୍ଦ୍ଧା ରାଜାଙ୍କର ଇଷ୍ଟଦେବୀ ତଥା ଯୁଦ୍ଧଦେବୀ । ପାଇକମାନେ ଦେବୀ ବରୁଣେଇଙ୍କ ଆଶୀର୍ବାଦ ଭିକ୍ଷା କରି ଯୁଦ୍ଧ ଅଭିଯାନରେ ବାହାରିଥାନ୍ତି। ପୂର୍ବକାଳରେ ଓଡ଼ିଶାର ଗଡଜାତ ରାଜାମାନଙ୍କର ଜଣେ ଇଷ୍ଟଦେବୀ ତଥା ଯୁଦ୍ଧଦେବୀ ଥିଲେ । ସେମାନେ ଯୁଦ୍ଧ ସମୟରେ ସାହାଯ୍ୟ କରୁଥିଲେ ବୋଲି ଲୋକମାନଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ଏ ପ୍ରସଙ୍ଗରେ ଆମେ କେଉଁ କେଉଁ ଗଡ଼ଜାତରେ କେଉଁମାନେ ଯୁଦ୍ଧଦେବୀ ରୂପେ ପୂଜା ପାଉଥିଲେ ସେମାନଙ୍କ ନାମ ଉଲ୍ଲେଖ କରିବା, ଯଥା- ରଣପୁରରେ ମଣିନାଗ, ଖିଲାମୁଣ୍ଡା, ନୟାଗଡ଼ରେ ବାଉତି, ବାଙ୍କିରେ ଚର୍ଚ୍ଚିକା, ବଡ଼ମ୍ବାରେ ଭଟ୍ଟାରିକା, ନରସିଂହପୁରରେ ପ୍ରଗଳ୍ଭା, ମୟୂରଭଞ୍ଜରେ ଅମ୍ବିକା, କେନ୍ଦୁଝରରେ ତାରେଣୀ, କଳାହାଣ୍ଡିରେ ମାଣିକେଶ୍ୱରୀ,

ପାଟଣାରେ ପାଟଣେଶ୍ୱରୀ, ଡମପଡ଼ାରେ ଅରାଚଣ୍ଡୀ, ବାଣପୁରରେ ଭଗବତୀ, ଖଲ୍ଲିକୋଟରେ ନାରାୟଣୀ, ଘୁମୁସରରେ ବ୍ୟାଘ୍ରଦେବୀ, ପାରଳାଖେମୁଣ୍ଡିରେ ମାଣିକେଶ୍ୱରୀ ଓ ସ୍ତମ୍ଭେଶ୍ୱରୀ, ବଣାଇରେ କନ୍ତଦେବୀ, ତାଳଚେରରେ ହିଙ୍ଗୁଳା, ବୌଦ୍ଧରେ ଭୈରବୀ, ଆଠମଲ୍ଲିକରେ ମାହେଶ୍ୱରୀ, ମହୁରୀରେ ମହୁରୀ କାଳୁଆ, ମଂଜୁଷାରେ ଖିଲାମୁଣ୍ଡା, ଧରାକୋଟରେ କୁଠାରୀ, ବଡ଼ଖେମୁଣ୍ଡିରେ ମାଣିକେଶ୍ୱରୀ, ଆଠଗଡ଼(ଗଞ୍ଜାମ)ରେ ଭାରମୁଣ୍ଡି, ସମ୍ବଲପୁରରେ ସମଲେଶ୍ୱରୀ, ସୋନପୁରରେ ସୁରେଶ୍ୱରୀ, ଚିକିଟିରେ କନକ ଦୁର୍ଗା, ନୀଳଗିରିରେ କନକଦୁର୍ଗା, ବସ୍ତରରେ ଦନ୍ତେଶ୍ୱରୀ, ଚନ୍ଦ୍ରପୁରରେ ଚନ୍ଦ୍ରହାସିନୀ, ଖଡ଼ିଆଳରେ ରକ୍ତାମ୍ବରୀ, ପାରିକୁଦରେ କାଳିଜାଇ, ଜରଡ଼ାରେ ଫୁଲେନଶ୍ୱରୀ, ସୁରଙ୍ଗୀରେ କୁରେଇଶୁଣୀ, ଟେକାଲିରେ ଭାରମୁଣ୍ଡି, ଦଶପଲ୍ଲାରେ କନକଦୁର୍ଗା ଆଦି ।

ଖୋର୍ଦ୍ଧା ରାଜାଙ୍କର ଇଷ୍ଟଦେବୀ ବରୁଣେଇ ଠାକୁରାଣୀ ହୋଇଥିବାରୁ ପାଇକମାନେ ଦେବୀଙ୍କୁ ପୂଜା କରି ଯୁଦ୍ଧ ଅଭିଯାନରେ ବାହାରିଥାନ୍ତି । ସେମାନେ ପାଇକ-ବୋଲି ନିମ୍ନମତେ ଗାଇଥାନ୍ତି-

"ଶ୍ରୀଶ୍ରୀ ଶ୍ରୀ ଅଷ୍ଟ ଉତ୍ତର ଶ୍ରୀ
ବୀର ଶ୍ରୀ ଗଜପତି ଗଜ ଈଶ୍ୱର
ଅଖଣ୍ଡ ଖଣ୍ଡ ମହୀମଣ୍ଡଳ ଲଲାଟେ କଳେବର
ବୀରାଧି ବୀରବର ପ୍ରତାପ ଗଉଡ଼େଶ୍ୱର
କଳିଯୁଗ ଷଣ୍ଢ ଝାଡ଼ପାତିଶା ଖଣ୍ଡା
ନବକୋଟି କର୍ଣ୍ଣାଟ କଳବର୍ଗ ଚଣ୍ଡା
କ୍ଷତ୍ରିକୁଳ ଲଂଜା, ଭୈରବୀ ଧୂପ ଖଣ୍ଡା
ପରମେଶ୍ୱରଙ୍କ ଧଣ୍ଡା- ସୁଦର୍ଶନ ଚକ୍ର ଝଣ୍ଡା
ଆଦ୍ୟରେ ଆଦିପତି ମହୀରେ ମହୀପତି
ତଳେ ବସୁମତି, ଉପରେ ଧର୍ମ ଦେବତା
ଅତୁଳ ବଳ ବିକ୍ରମ ନୃପତିଙ୍କ ନୃପତି
ସୁବର୍ଣ୍ଣ ସିଂହାସନରେ ବିଜେ କରିଅଛନ୍ତି
ସଂଗ୍ରାମେ ସହସ୍ରବାହୁ ବୀରଙ୍କ ଶିରୋମଣି
ପାତ୍ର ମନ୍ତ୍ରୀ ଚଉପାଶେ ସେବକ ଖଟଣି
କହିବା ଶୁଣ ରଞ୍ଜାଇ
ପାଇକର ପଣ ଯହିଁ ଅଛଇ ଯେ
ଜାତି ଟେକ ବୋଲି ତାକୁ କହେ ପାଇକରେ ।

ବାନା ଗହନ ଅଟଇ
ସାହା ଅଟେ ତାକୁ ମା' ବରୁଣେଇ ଯେ
ନାମ କହିବା ବୁଝାଇ ପାଇକରେ ।୧।

ପାଇକମାନେ ଯୁଦ୍ଧକୁ ଗଲାବେଳେ ମା' ବରୁଣେଇଙ୍କ ନାମ ସ୍ମରଣ କରିଥାନ୍ତି । ବୀରମାଟି ଖୋର୍ଦ୍ଧାର ଗର୍ବ ଓ ଗୌରବର ମୂକସାକ୍ଷୀ ଐତିହ୍ୟ ପ୍ରସିଦ୍ଧ ବରୁଣେଇ ପୀଠ ସମ୍ପର୍କରେ ରାମାୟଣ, ମହାଭାରତ ତଥା କପିଳସଂହିତା ବର୍ଣ୍ଣନା ରହିଛି। ଏହି ପର୍ବତର ନାମ ବାରୁଣୀଗିରି ତଥା ବାରୁଣାବନ୍ତ ବୋଲି ଉଲ୍ଲେଖ ଅଛି । ଚତୁର୍ଦ୍ଦଶ ଶତାବ୍ଦୀରେ ଗଜପତି ପୁରୁଷୋତ୍ତମ ଦେବ କାଞ୍ଚି ବିଜୟ କରି ସେଠାରୁ ସାକ୍ଷୀଗୋପାଳ ମୂର୍ତ୍ତି, ରତ୍ନ ସିଂହାସନ ଓ ଫେରିବା ପଥ ମଧ୍ୟରେ ବିଜୟନଗର ରାଜ୍ୟରୁ ତା.୧୪.୬.୧୪୯୭ରେ ବରୁଣେଇ, ଅରୁଣେଇ ମୂର୍ତ୍ତି ଆଣିଥିଲେ । ସାକ୍ଷୀଗୋପାଳ ମୂର୍ତ୍ତିଙ୍କୁ ପ୍ରଥମେ ବାରବାଟୀ ଦୁର୍ଗରେ ରଖାଯାଇଥିଲା । ପରେ ତାହା ପୁରୀ ଶ୍ରୀମନ୍ଦିର, ଦାଣ୍ଡମୁକୁନ୍ଦପୁର, ଖୋର୍ଦ୍ଧାଗଡ଼, ରଥୀପୁର ଗଡ଼, କନ୍ତଳବାଇରେ ରଖାଯାଇ ଶେଷରେ ମରହଟ୍ଟା ରାଜତ୍ୱର ଶେଷଭାଗରେ ସାକ୍ଷୀଗୋପାଳରେ ସ୍ଥାପନ କରାଯାଇଥିଲା । ଯେଉଁଠାରେ ସାକ୍ଷୀଗୋପାଳ ନାମରେ ରେଳଷ୍ଟେସନ ଓ ସତ୍ୟବାଦୀ ନାମରେ ପୁଲିସ ଥାନା, ନିର୍ବାଚନ ମଣ୍ଡଳୀ ଓ ବ୍ଲକ୍ ଥିଲେ ମଧ୍ୟ ଉଭୟ ସତ୍ୟବାଦୀ କିମ୍ବା ସାକ୍ଷୀଗୋପାଳ ନାମରେ ରାଜସ୍ୱ ଗ୍ରାମ ନାହିଁ । ଗଜପତି ପୁରୁଷୋତ୍ତମ ଦେବ ବିଜୟନଗର ରାଜ୍ୟରୁ ଆଣିଥିବା କମନୀୟ ବରୁଣେଇ ଓ ଅରୁଣେଇ (ପରେ କରୁଣେଇ) ମୂର୍ତ୍ତିକୁ ପୁରାଣ ପ୍ରସିଦ୍ଧ ବ୍ରହ୍ମାଙ୍କ ସର୍ଜନା ବୋଲି କୁହାଯାଉଥିବା ବାରୁଣାବନ୍ତ ଗିରିରେ ସ୍ଥାପନ କଲେ। ଏଥିପାଇଁ ଏକ ମଣ୍ଡପ ଥିଲା ନା କ୍ଷୁଦ୍ର ମନ୍ଦିର ନିର୍ମିତ ହୋଇଥିଲା ତାହା ଜଣାପଡ଼ିନାହିଁ । କିନ୍ତୁ ଖୋର୍ଦ୍ଧାର ପ୍ରଥମ ରାଜା ଗଜପତି ରାମଚନ୍ଦ୍ର ଦେବ ଯେତେବେଳେ ଖୋର୍ଦ୍ଧାରେ ରାଜବଂଶ ସ୍ଥାପନ କଲେ ସେହି ସମୟରେ ଆଜିର ଏହି ବରୁଣେଇ ମନ୍ଦିର ନିର୍ମିତ ହୋଇଥିଲା । ଗଜପତି ରାମଚନ୍ଦ୍ର ଦେବଙ୍କ ଦ୍ୱାରା ଅନ୍ୟ ଏକ ପ୍ରଧାନ କୀର୍ତ୍ତି ଥିଲା ପୂର୍ବରୁ କଳାପାହାଡ଼ ଦ୍ୱାରା ଅପହୃତ ତଥା ଗଙ୍ଗାନଦୀକୂଳରେ ଅର୍ଦ୍ଧଦଗ୍ଧ ଅବସ୍ଥାରେ ଥିବା ଚତୁର୍ଦ୍ଧା ମୂର୍ତ୍ତିଙ୍କ ବ୍ରହ୍ମ, ଯାହା ବିଶର ମହାନ୍ତିଙ୍କ ଦ୍ୱାରା ଅଣାଯାଇ କୁଜଙ୍ଗ ଗଡ଼ରେ ଥିଲା ତାହା ସେଠାରୁ ଆଣି ବିଗ୍ରହ ନିର୍ମାଣ କରାଇ ତାହା ଶ୍ରୀମନ୍ଦିରରେ ପ୍ରତିଷ୍ଠା କରାଇଥିଲେ । "ଏହି ପୁଣ୍ୟ ଦିନଟି ଥିଲା ରାମଚନ୍ଦ୍ର ଦେବଙ୍କ ଦଶମ ଅଙ୍କର ଶ୍ରାବଣ ଶୁକ୍ଳ ସପ୍ତମ ତିଥି ଇଂରେଜୀ ୧୫୭୫ ମସିହା ଜୁଲାଇ ୧୭ ତାରିଖ ।" (୨) ବରୁଣେଇ ମନ୍ଦିରର ନିର୍ମାଣ କାଳ ଜଣାପଡ଼ିନାହିଁ, କିନ୍ତୁ ଏହି ମନ୍ଦିର ଗଜପତି ରାମଚନ୍ଦ୍ର ଦେବଙ୍କ ଦ୍ୱାରା ଯେ ନିର୍ମିତ ହୋଇଥିଲା, ଏହା ନିଶ୍ଚିତ। ଖୋର୍ଦ୍ଧା ରାଜ୍ୟର ପ୍ରମୁଖ ମନ୍ଦିରମାନଙ୍କ ମଧ୍ୟରେ ଏହାର ପ୍ରାଧାନ୍ୟ ଥିଲା । ପୁଣ୍ୟାତ୍ମା ଦିଗମ୍ବର ଶ୍ରୀଚନ୍ଦନ 'ଖୁରୁଧା ଦର୍ପଣ'ରେ ଲେଖିଛନ୍ତି-

"ଲୋକେଶ୍ୱର, ବରୁଣାଇ, ଧବଳଈଶ୍ୱର
ପ୍ରକାଶ୍ୟ ଅଟନ୍ତି ଏହି ଖୁରୁଦା କିଲ୍ଲାର
ସେହି ଯୁଝାରସିଂହର ପୂର୍ବେ ଅଳ୍ପ ଦୂରେ
ବରୁଣେଇ ଠାକୁରାଣୀ ପର୍ବତ ଉପରେ ।" (୩)

"ଉତ୍କଳୀୟ ଶିଳ୍ପଶାସ୍ତ୍ରର ଅନୁସରଣରେ ଖୋର୍ଦ୍ଧାର ଶିଳ୍ପୀମାନଙ୍କ ଦ୍ୱାରା ବରୁଣେଇ ମନ୍ଦିର ହୋଇଥିଲା ନିର୍ମିତ । ପାହାଡ଼ର ପାଦଦେଶରୁ ପଇଁଚାଳିଶ ଦଶମିକ ବାସ୍ତରୀ ମିଟର (୪୫.୭୨) ବା ଏକଶହ ପଚାଶ ଫୁଟ୍ ଉଚ୍ଚତାରେ ବରୁଣେଇଙ୍କ ମନ୍ଦିର ଅବସ୍ଥିତ । ଓଡ଼ିଶାର ଅଧିକାଂଶ ପ୍ରାଚୀନ ମନ୍ଦିର ପରି ଏଥିରେ ୧. ବିମାନ ଦେଉଳ, ୨. ମୁଖଶାଳା ବା ଜଗମୋହନ, ୩. ଭୋଗ ମଣ୍ଡପ ବା ଗୁମୁଟ ରହିଛି । ଏଗୁଡ଼ିକର ଦ୍ୱାର ଉତ୍ତରମୁଖୀ । ବିମାନ ଦେଉଳରେ ଦେବୀ ପ୍ରତିମାଙ୍କ ସିଂହାସନ ଓ କୋଠଭୋଗର ଆସ୍ଥାନ । ଜଗମୋହନ ବା ଅନ୍ତରାଳରେ ଭକ୍ତ ଓ ଯାତ୍ରୀମାନେ ଦଣ୍ଡାୟମାନ ହୋଇ ଦେବୀ ଦର୍ଶନ କରନ୍ତି । ଭୋଗ ମଣ୍ଡପରେ ଯାତ୍ରୀମାନଙ୍କ ପ୍ରଦତ୍ତ 'ଛତ୍ରଭୋଗ' ଠାକୁରାଣୀଙ୍କ ନିକଟରେ ଲାଗି ହୁଏ। ଗର୍ଭଗୃହ, ଜଗମୋହନ ଓ ଗୁମୁଟର ଭିତର ବାହାର ବହଳ ଚୂନ ଆସ୍ତରଣ ଦ୍ୱାରା ଆବୃତ୍ତ । ମନ୍ଦିର ନିର୍ମାଣ ସମ୍ପର୍କରେ କୌଣସି ଲେଖାଗତ ପ୍ରମାଣ ମିଳୁନଥିଲେ ହେଁ ଅନ୍ୟାନ୍ୟ ପ୍ରାଚୀନ ମନ୍ଦିର ପରି ପୀଠ ବରୁଣେଇ ମନ୍ଦିରରେ ପୀଠ, ବାଡ଼, ରେଲଖ, ବେକି, ଶିଳା, ଖପୁରୀ, କଳସପାଦ, କଳସ, କଳସ ଡୋରି, କଳସବାଡ଼ି ପ୍ରଭୃତି ରହିଛି । ମନ୍ଦିରକୁ ସ୍ଥାୟୀ, ସୁଦୃଢ଼ ଓ ସୁନ୍ଦର କରିବା ପାଇଁ ରେଖ ଛାତ ଉପରେ ଗୁରୁଭାର ସ୍ୱରୂପ ଆମଲକ ଶିଳା, କୁମ୍ଭ ପଥର ବା କଳସ ନିର୍ମିତ ହୋଇଛି । ବିମାନ ଭିତରେ ସମ ଚତୁଃସ୍କୋଣ ଚଟାଣ କ୍ଷେତ୍ରରେ ରହିଛି ସିଂହାସନ । ବିମାନର ଭିତର ପଶ୍ଚିମ କାନ୍ଥରେ ଧାତୁ ପ୍ରତିମା କନକଦୁର୍ଗାଙ୍କୁ ରଖିବା ପାଇଁ ଗୋଟିଏ ଠଣା ବା ଘରା ରହିଛି । ଦେବୀଙ୍କ ବସନ ଭୂଷଣ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ରଖିବା ପାଇଁ ଦ୍ୱାରବନ୍ଧ ଉପରେ ନିର୍ମିତ ହୋଇଛି ଏକ ବୃହତ ଘରା । ମନ୍ଦିରର ଚୂଡ଼ାରେ ରହିଛି ତିନିପାୟା ଲୁହାରେ ନିର୍ମିତ ଚକ୍ର ତ୍ରିଶୂଳ ।୪।

ଏଠାରେ ଥିବା ମନ୍ଦିରମାନଙ୍କ ମଧ୍ୟରେ "ବିମାନ ଦେଉଳର ପ୍ରସ୍ଥ, ଲମ୍ବ ଓ ଉଚ୍ଚତା (୧୯X୧୮X୨୮)ଫୁଟ । ଏହାପରେ ୯ଫୁଟ୍ ୪ଇଂଚ କାନ୍ଥ ଉପରେ ୧୧ଫୁଟ ୬ଇଞ୍ଚର ୫ସ୍ତର ବିଶିଷ୍ଟ ପୀଢ଼ ଛାତ ରହିଛି । ଛାତ ଉପରେ ୬ଫୁଟ୍ ୫ଇଞ୍ଚ ଉଚ୍ଚତା ବିଶିଷ୍ଟ ଦୁଇ ବେଢ଼ ଶ୍ରୀଦେବୀ, ତା' ଉପରେ ଅମନଶୀଳା ଓ କଳସପାଦ ରହିଛି । ୧୪ ଇଞ୍ଚ ଉଚ୍ଚର କଳସ ଉପରେ ସ୍ଥାପିତ ହୋଇଛି ଚକ୍ର-ତ୍ରିଶୂଳ । ମୁଖଶାଳା ୧୩'x୧୯' ଲମ୍ବ ଓସାର । ଏହାର ୪ସ୍ତର ବିଶିଷ୍ଟ ପୀଢ଼ ଛାତ ଉପରେ କଳସ ପାଦ ଓ କଳସ ରହିଛି । ଭୋଗ

ମଣ୍ଡପ ୧୨'୪"x ୧୯' ଲମ୍ବ ଓସାର । ଭିତର କାନ୍ଥର ମୋଟେଇ ୩ଫୁଟ୍ । ଏହାର ୫ସ୍ତର ବିଶିଷ୍ଟ ପୀଢ଼ ଛାତ ଉପରେ ଶ୍ରୀବେକି ଓ କଳସପାଦ ନିର୍ମିତ । ଗୁମୁଟ ଭିତରେ ୨ଫୁଟ୍ ଉଚ୍ଚର ସ୍ତମ୍ଭ ଉପରେ ୨ଫୁଟ୍‌ର ସିଂହ ସ୍ଥାପିତ । ମନ୍ଦିର ସମ୍ମୁଖରେ ଏକ ବଡ଼ ଜଳଧାର ରହିଛି । ପାହାଡ଼ ଭିତରୁ ପ୍ରବାହିତ ହେଉଥିବା 'ସ୍ୱର୍ଗଗଂଗା' ଝରଣାର ଜଳ ନିର୍ଗତ ହେବା ପାଇଁ କୁଣ୍ଡାପଥରରେ ନିର୍ମିତ ଦୁଇଟି ମଗର ମୁହଁ କାନ୍ଥ ଉପରେ ରହିଛି । ପୂର୍ବ ପାର୍ଶ୍ୱସ୍ଥ ବେଢ଼ାରେ ୧୧ଫୁଟ୍ ଉଚ୍ଚ ଗୋଲାକାର ଛାତ ବିଶିଷ୍ଟ ହନୁମାନ ମନ୍ଦିର ରହିଛି । ଏକ ପ୍ରସ୍ତରରେ ଖୋଦିତ ସିନ୍ଦୂର ଆଚ୍ଛାଦିତ ୩ଫୁଟ୍ ଉଚ୍ଚର ମୂର୍ତ୍ତି ଏଠାରେ ଶୋଭା ପାଉଛି । ବାରଫୁଟ୍ ଉଚ୍ଚର ଏକ ସ୍ୱତନ୍ତ୍ର ଶିବ ମନ୍ଦିର ମଧ୍ୟ ଏହାର ପରିସରରେ ଅବସ୍ଥିତ । ୧୯୫୦ ମସିହାରେ ସ୍ୱର୍ଗତ ଭାଗୀରଥି ରାମଙ୍କ ଦ୍ୱାରା ଏହା ସ୍ଥାପିତ । ସ୍ୱର୍ଗତ ରାମ ତା ୧୨.୮.୧୯୫୦ରେ ପୂର୍ବତଟ ଚାନ୍ଦିନୀ ନିର୍ମାଣ କରିଥିଲେ । ପଶ୍ଚିମ ପାର୍ଶ୍ୱସ୍ଥ ଚାନ୍ଦିନୀ ସ୍ୱର୍ଗତ ରିଛପାଲ ରାମଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।'(୫)

ପୁରୀ ଜିଲ୍ଲା ଗେଜେଟିୟରରୁ ବରୁଣେଇଙ୍କ ମୂର୍ତ୍ତି ସମ୍ପର୍କରେ ନିମ୍ନଲିଖିତ ତଥ୍ୟ ମିଳେ- "Inside the small temple are placed two rude inages of black stone, called Goddess Varunei and Karunai, sitting together. They are now worshiped as a forms of Goddess Durga, the pujari being a Brahmin. But their origin might be possibly the form the Vajrajan cult."

ଖୋର୍ଦ୍ଧା ସହରର ପୂର୍ବ ଦିଗରେ ୭କି.ମି. ଦୀର୍ଘ ଓ ୮୦୦ ମିଟର ପ୍ରସ୍ଥ ବିଶିଷ୍ଟ ଏବଂ ୮୫-୩୯' ପୂର୍ବ ଦ୍ରାଘିମା ଓ ୨୦°-୩୦° ଉତ୍ତର ଅକ୍ଷାଂଶ ମଧ୍ୟରେ ଅବସ୍ଥିତ ବରୁଣେଇ ପର୍ବତର ଖୋଲରେ ପାଦଦେଶଠାରୁ ୧୫୦ ଫୁଟ୍ ଉଚ୍ଚତାରେ କଳାମୁଗୁନି ପଥରରେ ଖୋଦିତ ବରୁଣେଇ ଓ କରୁଣାଇଙ୍କ ପ୍ରତିମା ସ୍ଥାପିତ ହୋଇଥିଲା । ସେତେବେଳେ ଏହି ମୂର୍ତ୍ତି ଦ୍ୱୟଙ୍କ ନାମ ବରୁଣାଇ ଓ ଅରୁଣାଇ ଥିବାର ଜଣାଯାଏ । ପରେ ଲୋକଙ୍କ ତୁଣ୍ଡରେ ଅରୁଣାଇ କରୁଣାଇ ରୂପେ ପରିଚିତ ହେଲେ । ଖୋର୍ଦ୍ଧା ରାଜ୍ୟ ସ୍ଥାପିତ ହେବା ପରେ ବରୁଣେଇ କରୁଣେଇ ଖୋର୍ଦ୍ଧା ରାଜ୍ୟର କ୍ଷେତ୍ରେଶ୍ୱରୀ ରୂପେ ପରିଚିତ ହେଲେ । ପରବର୍ତ୍ତୀ ସମୟରେ ସେ ଖୋର୍ଦ୍ଧାର ରାଷ୍ଟ୍ରଦେବୀ ରୂପେ ଗୃହୀତ ହେଲେ ।'

'ସିଂହାସନ ଉପରେ ବାମ ପାର୍ଶ୍ୱରେ ବରୁଣେଇ ଓ ଡାହାଣ ପାର୍ଶ୍ୱରେ କରୁଣାଇ ପ୍ରତିମା ପଦ୍ମାସନରେ ଆସୀନ । ଅଠର ଇଞ୍ଚ ଉଚ୍ଚତା ବିଶିଷ୍ଟ ବରୁଣାଇ-କରୁଣାଇ ଚତୁର୍ବାହୁ ବିଗ୍ରହ । କୌଶରୀ ପ୍ରତିମା ପରି ଏହାଙ୍କ ଅଧରରେ ରହିଛି ସ୍ମିତହାସ୍ୟ । ଉଭୟ ମୂର୍ତ୍ତିଙ୍କ ଚତୁଃପାର୍ଶ୍ୱରେ ସିଂହ ରହିଛି । ବରୁଣେଇଙ୍କ ବାମ ହାତରେ ରହିଛି ଡମ୍ବରୁ ଓ ଡାହାଣ ହାତରେ ତ୍ରିଶୂଳ ।

ନିମ୍ନସ୍ଥ ବାମବାହୁ କଚଟିଠାରୁ ଭଗ୍ନ । ତେଣୁ ଅନ୍ୟ ହସ୍ତଦ୍ୱୟର ମୁଦ୍ରା ନିର୍ଣ୍ଣୟ କରିବା କଷ୍ଟସାଧ । ମୁସଲମାନ ରାଜତ୍ୱ କାଳରେ ଖୋର୍ଦ୍ଧା ଦୁର୍ଗ ବାରମ୍ବାର ଆକ୍ରମଣର ଶିକାର ହେଉଥିବା ସମୟରେ କୌଣସି ଧର୍ମାନ୍ଧ ସୁବେଦାର ଏହି ମୂର୍ତ୍ତିଦ୍ୱୟଙ୍କୁ ଭାଙ୍ଗିଥିବା ଜଣାଯାଏ । ବରୁଣାଇଙ୍କ ବାମ ହାତରେ ଅଙ୍କୁଶ ଓ ଡାହାଣ ହାତରେ କଳସ ରହିଛି । ମସ୍ତକସ୍ଥିତ କେଶରାଶିକୁ ଏକତ୍ର କରାଯାଇ ଏକ ଜୁଡ଼ା ଭାବରେ ବନ୍ଧନ କରାଯାଇଛି ଓ ଦକ୍ଷିଣୀ ଖୋସା ସହିତ ମଥାରେ ଚଉଡ଼ା ମୁକୁଟ ରହିଛି । ଉକ୍ତ ବିଗ୍ରହରେ ଖଚିତ ସୂକ୍ଷ୍ମ ଅଙ୍ଗବସ୍ତ୍ର, କଟିଦେଶର ମେଖଳା ତଥା ଗୋଡ଼ବଳା, ବାଜୁବନ୍ଧ, ଗଳାରେ ପଦକ ସଂଯୁକ୍ତ ହାର, ଆଜାନୁଲମ୍ବିତ ବନମାଳାରେ ଦକ୍ଷିଣ ଭାରତୀୟ କଳାର ଆଭାସ ପରିଲକ୍ଷିତ ହୁଏ । ମୂର୍ତ୍ତି ଦ୍ୱୟ ଥିବା ସିଂହାସନର ଉଭୟ ପାର୍ଶ୍ୱରେ ଖୋର୍ଦ୍ଧାର ବିଶିଷ୍ଟ ବ୍ୟବସାୟୀ ମଥୁରି ରାମଙ୍କ ପିତା ୰ ଗୁଲଜାର ରାମ ଦୁଇଟି ସିଂହ ନିର୍ମାଣ କରିଛନ୍ତି ।' (୬)

'ବରୁଣେଇ ପୀଠରେ ପାଳିତ ବିଭିନ୍ନ ପର୍ବପର୍ବାଣି ମଧ୍ୟରେ ରଜପର୍ବ ପ୍ରଧାନ ପର୍ବ । କେବଳ ଖୋର୍ଦ୍ଧା ଓ ଏହାର ଆଖପାଖ ଅଞ୍ଚଳ ନୁହେଁ, ବହୁ ଦୂରଦୂରାନ୍ତରୁ ଆବାଳ ବୃଦ୍ଧ ବନିତା ରଜ ସମୟରେ ଏଠାକୁ ଆସିଥାନ୍ତି । ପାହାଡ଼ର ପାଦଦେଶରୁ ମନ୍ଦିର ଆଡକୁ ଯାଇଥିବା ରାସ୍ତାର ଦୁଇ ପାର୍ଶ୍ୱରେ ଧାଡ଼ିଧାଡ଼ି ହୋଇ ଗଛମୂଳେ ଲାଗିଥାଏ ବିଭିନ୍ନ ଜିନିଷର ବିପଣି । ରଜପର୍ବର ମୁଖ୍ୟ ଆକର୍ଷଣ ଠେକାମୁଆଁ । ବାଣପୁର ମା' ଭଗବତୀଙ୍କ ଗଜମୁଆଁ ଭଳି ଏହି ମୁଆଁର ପ୍ରସିଦ୍ଧି । କଇଁଫୁଲ ପୋଖରୀରେ ରହି ପାଖୁଡ଼ା ଶୁଖିଯିବା ପରେ ସେଥିରେ ଥିବା କେଶରକୁ ଆଣି ଭାଙ୍ଗିଲେ ସେଥିରେ ସାଗୁଦାନା ଭଳି ଦାନା ବାହାରେ । ତାହା ଭଜା ଯାଇ ଲିଆ ହୁଏ । ସେହି ଲିଆରେ ଜୁଆଣି ଆଉ ଗୁଡ଼ ପାଗ ହୋଇ ଶିଳପୁଆ ଆକାରର ମୁଆଁ ପ୍ରସ୍ତୁତ ହୁଏ।' (୭)

ବରୁଣେଇ ମନ୍ଦିରର ପାଦଦେଶରେ ଶହୀଦ ପାଇକମାନଙ୍କ ସ୍ମୃତିରକ୍ଷା ପାଇଁ ସ୍ଥାପିତ ହୋଇଛି ଶହୀଦ ସ୍ତମ୍ଭ । ମନ୍ଦିର ନିକଟକୁ ଯିବା ପାଇଁ ୮୮ଟି ପ୍ରସ୍ତର ପାବଚ୍ଛ କରାଯାଇଛି । ୧୯୪୦ରୁ ୧୯୪୪ ମସିହା ମଧ୍ୟରେ ଖୋର୍ଦ୍ଧା ଉପରସାହିର ଫକୀର ପରିଡ଼ା ଠିକାଦାର ଭାବେ ଏହି କାର୍ଯ୍ୟ କରିଥିଲେ । ଏସ୍‌ଡିଓଙ୍କ ଉନ୍ନୟନ ପାଣ୍ଠିରୁ ଅର୍ଥ ଖର୍ଚ୍ଚ ହୋଇଥିଲା । ପାହାଚ ପାଇଁ ଝିଙ୍କିଝାରୀ ପଥରଖଣିରୁ ପଥର ଆସିଥିଲା । ସେତେବେଳେ ଶ୍ରମିକମାନେ ଦୁଇଅଣା ମଜୁରିରେ ଏହି କାର୍ଯ୍ୟ କରିଥିଲେ । ଏହି ପାହାଚଗୁଡ଼ିକର ଓସାର ଛ'ଫୁଟ୍ । ଅଧିକାଂଶ ପାହାଚର ଲମ୍ବ ୮ଫୁଟ୍‌ରୁ ୧୨ ଫୁଟ୍ । ଏବେ ସେହି ମାଙ୍କଡ଼ା ପଥର ଉପରେ ସିମେଂଟ୍ କରାଯାଇଛି । ପାହାଚର ଦୁଇ ପାଖରେ ଆମ୍ବ ବୃକ୍ଷମାନ ଥିବାରୁ ଏହାର ଦୃଶ୍ୟ ଅତ୍ୟନ୍ତ ମନୋରମ । ଏ ପ୍ରସଙ୍ଗରେ ବର୍ଣ୍ଣିତ ଅଛି- "The Mango groves on both the sides of the stone steps leading up to the temple have added to the beauty of the place." (8)

ପାରମ୍ପରିକ ରଜ ଉତ୍ସବ ସମୟରେ ବିଧାୟକ ଜ୍ୟୋତିରିନ୍ଦ୍ରନାଥ ମିତ୍ରଙ୍କ ପୃଷ୍ଠପୋଷକତାରେ ଗଢ଼ିଉଠିଥିବା 'ଦିଶାନ୍ତ' ଅନୁଷ୍ଠାନ ପକ୍ଷରୁ ବିଭିନ୍ନ ଆକର୍ଷଣୀୟ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ରଜ ଉତ୍ସବ ଭଳି ମା' ବରୁଣେଇଙ୍କର 'ଦଶହରା' ମଧ୍ୟ ବଡ଼ ଉତ୍ସବ । ଦଶହରା ସମୟରେ ପୁରୀ ଗଜପତିଙ୍କ ପକ୍ଷରୁ ପୂଜା ସାମଗ୍ରୀ ଆସିଥାଏ । ଦଶହରା ସମୟରେ ଏଠାରେ ଥିବା ଚତୁର୍ଭୂଜା 'କନକ ଦୁର୍ଗା' ପୂଜା ପାଇଥାନ୍ତି । ଆଠ ଇଞ୍ଚ ଉଚ୍ଚତା ବିଶିଷ୍ଟ ଏହି କମନୀୟ ମୂର୍ତ୍ତି ଉତ୍କଳୀୟ ଶିଳ୍ପ ଭାସ୍କର୍ଯ୍ୟର ନିଦର୍ଶନ ଅଟେ । ଦେବୀଙ୍କ ଦୁଇଟି ହସ୍ତ ଏକ ରାକ୍ଷସର ହୃଦୟକୁ ବିଦାରଣ କରୁଥିବାର ଦୃଶ୍ୟ ରହିଛି । ଏହି ରାକ୍ଷସର ଆକାର ମହିଷାକୃତି । ଦେବୀଙ୍କ ବାମହସ୍ତରେ ଶଙ୍ଖ ଏବଂ ଦକ୍ଷିଣ ହସ୍ତରେ ଚକ୍ର ଶୋଭାପାଉଛି । ଦଶହରା ସମୟରେ କନକ ଦୁର୍ଗା ଦୋଳ ବା ବିମାନରେ ବସି ଶୋଭାଯାତ୍ରାରେ ଯାଇଥାନ୍ତି ।

ବରୁଣେଇ ଦେବୀଙ୍କ ଜଗମୋହନଠାରେ ଭକ୍ତମାନେ ପୂଜାର୍ଚ୍ଚନା କରିଥାନ୍ତି । ସେମାନଙ୍କ ପ୍ରଦତ୍ତ ଛତ୍ର ଭୋଗ ଏଠାରେ ଅର୍ପଣ କରାଯାଇଥାଏ । ପଣସପତ୍ର ଠୋଲାରେ ଅରୁଆ ଚାଉଳରୁ ପ୍ରସ୍ତୁତ ଖିରି, ପୁରି, ଏଣ୍ଡୁରି ପିଠା ଭୋଗ ହୋଇଥାଏ । ଏଣ୍ଡୁରି ପିଠା ଭୋଗ ହେବା ପରେ ତାହା ପାଇବା ପାଇଁ ଭକ୍ତମାନେ ଆଗ୍ରହ ପ୍ରକାଶ କରିଥାନ୍ତି ।

ବରୁଣେଇ ମନ୍ଦିରକୁ ଯିବା ପୂର୍ବରୁ ପାହାଡ଼ର ପାଦଦେଶରେ ରାସ୍ତାର ଦକ୍ଷିଣ ପାର୍ଶ୍ୱରେ ପଡ଼େ 'ଦୁଧଖାଇ ଠାକୁରାଣୀ'ଙ୍କ ପୀଠ । ପୂର୍ବ କାଳରେ ବରୁଣାଇ ଜଙ୍ଗଲରେ ଗାଈ ଓ ମଇଁଷି ଚରାଉଥିବା ଜଗୁଆଳିମାନେ ଗାଈ ବା ମଇଁଷି ଜନ୍ମ କଲେ ତାଙ୍କର ପ୍ରଥମ କ୍ଷୀର ବା ଦୁଧ ଦୁଧଖାଇ ଠାକୁରାଣୀଙ୍କ ପାଖରେ ଅର୍ପଣ କରିଥାନ୍ତି । ଫଳରେ ଗାଈ ବା ମଇଁଷି ଅଧିକ କ୍ଷୀର ଦେଇଥାନ୍ତି । ଗାଈମାନଙ୍କର ଫାଟୁଆ ରୋଗରେ ମଧ୍ୟ ମା'ଙ୍କୁ କ୍ଷୀର ଅର୍ପଣ କରି ଆରାଧନା କଲେ ରୋଗ ଭଲ ହୁଏ ବୋଲି ବିଶ୍ୱାସ ରହିଛି । ମା'ଙ୍କ ନିକଟରେ କ୍ଷୀର ଭୋଗ କଲେ ବା ମାନସିକ କଲେ ଗାଈ, ମଇଁଷିଙ୍କୁ ଜଙ୍ଗଲରେ ବାଘ, ଗଧିଆ ଆକ୍ରମଣର ଭୟ ରହେନାହିଁ ବୋଲି ଲୋକମାନେ ବିଶ୍ୱାସ କରନ୍ତି । ସୂଚନାଯୋଗ୍ୟ, ୧୯୯୨ ପୂର୍ବରୁ ଗୋଟିଏ କାଳୁଚୁଆ ଗଛ ମୂଳରେ ଠାକୁରାଣୀ ଥିଲେ । ପ୍ରଫେସର ଗୋପାଳକୃଷ୍ଣ ଦାସଙ୍କ ମତରେ ଦୁଧଖାଇ ଠାକୁରାଣୀଙ୍କ ୩୨ ଇଞ୍ଚ ଲମ୍ବ ଓ ୨୫ଇଞ୍ଚ ଓସାରର ଏହି ମୂର୍ତ୍ତିର ତଳେ ଗୋଟିଏ ଚକ୍ର ଓ ସାତଟି ଅଶ୍ୱ ଖୋଦିତ ହୋଇଛି । ଏହା ସୂର୍ଯ୍ୟଦେବଙ୍କ ବାହନ ମକରଧ୍ୱଜଙ୍କର ଏକ ଖଣ୍ଡିତ ମୂର୍ତ୍ତି । ଏହି ମୂର୍ତ୍ତିର ଛାତି ପାଖରୁ ଭାଙ୍ଗିଯାଇଛି । ବହୁକାଳରୁ ଏହି ଭଗ୍ନମୂର୍ତ୍ତିକୁ ଦୁଧଖାଇ ଠାକୁରାଣୀ ରୂପେ ସ୍ଥାନୀୟ ଲୋକେ ପୂଜା କରିଆସୁଛନ୍ତି । ଠାକୁରାଣୀଙ୍କ ସଂଲଗ୍ନ ଅଂଚଳରେ ଖୋର୍ଦ୍ଧା ପୌରପାଳିକା ପକ୍ଷରୁ ଶିଶୁ ଉଦ୍ୟାନ ସ୍ଥାପନ କରାଯାଇ ସୁନ୍ଦର ପରିବେଶ ସୃଷ୍ଟି କରାଯାଇଛି ।

ଦେବୀ ବରୁଣେଇଙ୍କ ଅଶେଷ ମହିମା ଓ ଅବର୍ଣ୍ଣନୀୟ ପ୍ରାକୃତିକ ଶୋଭା ଦର୍ଶକମାନଙ୍କୁ ମୁଗ୍ଧ କରିଥାଏ । ଦଶହରା, ରଜ, ନୂଆବର୍ଷ ତଥା ଗ୍ରୀଷ୍ମକାଳରେ ଏଠାରେ ବହୁ ଜନସମାଗମ ହୋଇଥାଏ । କବିବର ରାଧାନାଥ ରାୟ ଏହି ସ୍ଥାନ ଭ୍ରମଣ କରି ଲେଖିଛନ୍ତି-

'ବାରୁଣୀ ଶଇଳ ଶିଖରେ
ନିତି ଯେହ୍ନୁ ବସନ୍ତି
ଧୂଅନ୍ତି ଯାହାଙ୍କ ଚରଣ
ଝର ଲହରୀ ପନ୍ତି ।'

ସେହିପରି କବି ଦିଗମ୍ବର ଶ୍ରୀଚନ୍ଦନ ଲେଖିଛନ୍ତି-

'ଧନ୍ୟ ଧନ୍ୟ ବରୁଣାଇ କନ୍ଦର ଭୂଖଣ୍ଡ
ବରୁଣାଇ କରୁଣାଇ ଯହିଁରେ ଶ୍ରୀମୁଣ୍ଡ
ଧନ୍ୟ ତାଙ୍କ ତପ ଫଳେ ଶୀତଳ ବାହିନୀ
ନାଭିସ୍ଥଳହୁଁ ଚିରଦିନ ପାଣି ।

ବରୁଣେଇ ଦେବୀଙ୍କ ମନ୍ଦିର ଉପର ଭାଗରେ ପର୍ବତ ମଧ୍ୟରେ ଏକ ସ୍ଥାନ ରହିଛି । ସେଠାରେ ପର୍ବତର ଅଭ୍ୟନ୍ତରରୁ ଆସିଥିବା ଚିରସ୍ରୋତା ଝରଣା 'ସ୍ୱର୍ଗଗଂଗା' ରହିଛି । ତେବେ ଠାକୁରାଣୀଙ୍କ ମନ୍ଦିର ପୂର୍ବରୁ ପାହାଡ଼ ଉପରେ ଥିବା ଝରଣାସ୍ଥଳୀକୁ 'ଅଦଲକୁଣ୍ଡ' ବୋଲି କୁହାଯାଉଛି। ଏହା ଚାରିପାଖେ ପାଚେରୀ ଘେରା ହୋଇଛି । ଏଠାରୁ ଜଳ ସିମେଂଟ୍ ନିର୍ମିତ ନାଳି ଦେଇ ନିର୍ଗତ ହୋଇଥାଏ । ଏହି ଜଳ ମା' ବରୁଣେଇଙ୍କ ନାଭିସ୍ଥଳ ଦେଇ ବାହାରକୁ ଆସେ । ମନ୍ଦିରକୁ ଯିବାକୁ ପାହାଚ ଅତିକ୍ରମ କଲାବେଳେ ବାମପଟେ ଥିବା ଏକ ସିମେଂଟ୍ ନିର୍ମିତ ଜଳାଶୟରେ ଜଳ ପଡ଼ିଥାଏ । ଏହି ଜଳ ବହୁ ଦୂରାରୋଗକୁ ଆରୋଗ୍ୟ କରିଥାଏ ବୋଲି ବିଶ୍ୱାସ ରହିଛି। ଏଠାରେ ସ୍ନାନ କରିବାର ମଜା ନିଆରା। ଠାକୁରାଣୀଙ୍କ ନାଭିଦେଶରୁ ଆସୁଥିବା ଜଳ ବାହାରପଟ କାନ୍ଥରେ ଥିବା କୁଣ୍ଡାପଥରରେ ନିର୍ମିତ ମଗରମୁହଁରୁ ଅନେକ ଜଳ ସଂଗ୍ରହ କରିଥାନ୍ତି । ଠାକୁରାଣୀ ପାଖରେ ଥିବା ଜଳକୁ ପାଦୁକା ରୂପେ ପୂଜକ ଦେଇଥାନ୍ତି । ଏହି ଜଳର ମହିମା ଉପରେ ଅନେକ ବର୍ଣ୍ଣନା ରହିଛି ।

ଖୋର୍ଦ୍ଧା ରାଜାଙ୍କର ଯୁଦ୍ଧଦେବୀ ତଥା ପାଇକମାନଙ୍କର ଆରାଧ୍ୟା ଦେବୀ ବରୁଣେଇଙ୍କୁ ନେଇ ଅନେକ ବନ୍ଦନା ରହିଛି । ସେଥି ମଧ୍ୟରୁ ଗୋଟିଏ ଏଥିରେ ସ୍ଥାନିତ କରୁଛି ।

-'ଶ୍ରୀ ଶ୍ରୀ ବରୁଣାଇ ବନ୍ଦନା'-

ଅପାଠୁଆ ଗୋ ମାତ କି ବର୍ଣ୍ଣିବି ମୁହିଁ
ଆସନ କରିଣ ଯତି ଯେଉଁ ଗତି ପାଇ
ଐଶାନ କୋଣରେ ମାତ ତୋହ ନିଜ ସ୍ଥଳ
ଈଶ୍ୱର ବ୍ରହ୍ମା ସେବଇ ଚରଣ କମଳ ଯେ
ଉତ୍ତର କୋଳରେ ମା'ତ ମହିମା ଅସୁର
ଉପଗତ ହେଲା ମର୍ତ୍ତ୍ୟ କଲା ଚୂରମାର
ଋଷି ଗଣେ ଦେବଗଣେ ଶକତି ଫେରିଲେ
ଏସନ ବିକଟ ରୂପ ତୋତେ ହିଁ ହରିଲେ ଯେ ।

x x x

ପଶ୍ଚିମ ବନ୍ଦିଲି ମାତ ବରୁଣାଇ ଗୁରୁ
ବାୟବ୍ୟ କୋଣରେ ବନ୍ଧ ଅରୁଣାଇ ଚାରୁ ।

x x x

ଖଣ୍ଡାୟତ କୁଳ ଆମ ସାମନ୍ତ ମାତର
ତୋହରି ଚରଣେ ଆମ ଶରଣ ସମ୍ଭାଳ ଯେ
ଭରଇ ରେଙ୍ଗଳ ଗଡ଼ ନାୟକ ଛାମୁରେ
ପାଇକେ ଗାଇବେ ଏହା ଯାତରା କାଳରେ ।'
(କହ୍ନେଇ ଚମ୍ପତିରାୟ- ପାଇକଖେଦା, ରଚନା-୧୬୨୪ ସାଲ୍)


**ତଥ୍ୟଧାରିକା:**

୧. ଦୁନ୍ଦୁଭି-୨୦୧୭, ପୃ-୫୮
୨. ଅନାଇ ରହିଛି ଗଡ଼ ଗଡ଼ଖାଇ- ପୃ-୨୮, ସତ୍ୟବାଦୀ ବଳିଆରସିଂହ
୩. ଖୁରୁଧା ଦର୍ପଣ (ପ୍ରଥମ ଭାଗ) ୧୯୨୭- ଦିଗମ୍ବର ଶ୍ରୀଚନ୍ଦନ
୪. ବରୁଣାଇର ପ୍ରତ୍ନତାତ୍ତ୍ୱିକ ବିଭବ- କସ୍ତୁରୀ- ପୃ-୪୬, ଅଧ୍ୟାପକ ଗୋପାଳକୃଷ୍ଣ ଦାସ
୫. Puri District Gazettier- Editor N. Senapati
୬. ବରୁଣାଇର ପ୍ରତ୍ନତାତ୍ତ୍ୱିକ ବିଭବ- କସ୍ତୁରୀ- ପୃ-୪୭
୭. ବଡ଼ ମଉଜ ବରୁଣେଇରେ ରଜ- ସମରେନ୍ଦ୍ର ବଳିଆରସିଂହ
୮ ବରୁଣାଇର ପ୍ରତ୍ନତାତ୍ତ୍ୱିକ ବିଭବ(କସ୍ତୁରୀ- ପୃ-୪୮), ଅଧ୍ୟାପକ ଗୋପାଳକୃଷ୍ଣ ଦାସ




## ଅଧ୍ୟାୟ # ୨

# ବାରୁଣୀ ପର୍ବତ ଓ ବାରୁଣାବନ୍ତ

"ଧନ୍ୟ ଧନ୍ୟ ବରୁଣାଇଁ ଆବର ସୋଲରି
କେତେ ରହିଛନ୍ତି ଯେ ତୋ ମୁକୁଟ ପରି ।
ଧନ୍ୟ ସେହି ହେଲେ ଯେଣୁ ତୋ ଶିର ମୁକୁଟ
ଅରି ଦର୍ପ ଗଂଜନେ କି ତୋର ଆଗ ଥାଟ ।"

(ଖୁରୁଧା ଦର୍ପଣ- ଦିଗମ୍ବର ଶ୍ରୀଚନ୍ଦନ)

ପୂର୍ବର ବାରୁଣୀ ପର୍ବତ ପରବର୍ତ୍ତୀ ସମୟରେ ବରୁଣାଇ ବା ବରୁଣେଇ ନାମରେ ପରିଚିତ । "ଏହି ବରୁଣେଇ ପାହାଡ଼ ଖୋର୍ଦ୍ଧା ସହରର ଦକ୍ଷିଣ-ପୂର୍ବ ଦିଗରେ ଅବସ୍ଥିତ ରହି ଭୂଗୋଳର ଜୟବାର୍ତ୍ତା ପ୍ରଚାର କରୁଅଛି । ପାହାଡ଼ଟିର ନାମରେ ଠାକୁରାଣୀ ବି ନାମିତ ହୋଇଅଛନ୍ତି । ଆଗ ପାହାଡ଼ ପରେ ଦେବୀ ବିଦ୍ୟମାନ । ପାହାଡ଼ ଓ ମା' ବରୁଣେଇ ଅଭିନ୍ନ ଓ ଅଙ୍ଗାଙ୍ଗୀ ଜଡ଼ିତ ।

ପାହାଡ଼ର ଦୈର୍ଘ୍ୟ ୭କି.ମି. ଓ ପ୍ରସ୍ଥ ୦.୮୦୦ ମିଟର । ଏହାର ଶରୀର କୁଣ୍ଡା ପଥରରେ ଭରି ରହିଛି । ପାହାଡ଼ଟି ପୂର୍ବଘାଟ ପର୍ବତମାଳାର ଅଂଶବିଶେଷ । ଡମପଡ଼ା, ହଳଦିଆ, ଘାଟିକିଆ, କୁରଖି ପର୍ବତ ଶ୍ରେଣୀ ଏହାରି ମଧ୍ୟ ଦେଇ ବାଣପୁର ପର୍ଯ୍ୟନ୍ତ ଲମ୍ବିଛି । ପାହାଡ଼ର ପୂର୍ବଭାଗରେ ଊର୍ଦ୍ଧ୍ୱଭାଗ ସାତଟି ଓ ନିମ୍ନଭାଗ ଛ'ଟି ଥିବା ସ୍ଥଳେ ପଶ୍ଚିମ ଖଣ୍ଡରେ ଊର୍ଦ୍ଧ୍ୱଭାଗ ନିମ୍ନଭାଗରେ ସଂଖ୍ୟା ଯଥାକ୍ରମେ ଚାରି ଓ ତିନି । ମୋଟ ଭାଗ କୋଡ଼ିଏରୁ ଏଗାରଟି ଊର୍ଦ୍ଧ୍ୱ ଓ ନ'ଟି ନିମ୍ନଭାଗ । ପାହାଡ଼ଟି ଭଙ୍ଗିଳ ପର୍ବତମାଳା ଶ୍ରେଣୀର ।

ବରୁଣେଇ ପାହାଡ଼ର ଉଚ୍ଚତା ୧୦୦୭ ଫୁଟ୍ । ପୂର୍ବ ଶୃଙ୍ଗ ୨୫୦ ଫୁଟ୍ । କଂଟୁରୁ ଲାଇନ୍ (ସମୋଚ୍ଚ ରେଖା)ରେ ବରୁଣାଇ ପାହାଡ଼ର ଲମ୍ବ ପ୍ରାୟ ତିନି ମାଇଲ । ପାହାଡ଼ଟି ପୂର୍ବ-ପଶ୍ଚିମ ରୀତିରେ ବିସ୍ତୃତ । ପୂର୍ବ ଦିଗରେ ପ୍ରଶସ୍ତ, ପଶ୍ଚିମ ଦିଗରେ ସଂକୀର୍ଣ୍ଣ । ଏଣୁ ଏହି ୨୫୦ଫୁଟ୍ ସମୋଚ୍ଚରେଖାରେ ପୂର୍ବଭାଗରେ ପ୍ରସ୍ଥ ୧୪୦୮ ଗଜ ବା ୪୭୨୪ ଫୁଟ୍, ପଶ୍ଚିମ ଅଂଶରେ ପ୍ରସ୍ଥ ୫୮୨ ଗଜ ବା ୧୭୬୯ ଫୁଟ୍ । ଖୋର୍ଦ୍ଧା- ଡେଲାଙ୍ଗ-ପଟ୍ଟନାୟିକା ରାସ୍ତା ପାର ହୋଇଥିବା ଗିରିସଙ୍କଟ ବା ଘାଟି ଅଂଶରେ ଏହା ସଂକୀର୍ଣ୍ଣ ଅଟେ । ପୂର୍ବ ଅଂଶ ଉଚ୍ଚତା ୧୦୦୨ ଫୁଟ୍, ମଧ୍ୟ ଅଂଶର ଉଚ୍ଚତା ୭୫୦ ଫୁଟ୍ ଏବଂ ଦକ୍ଷିଣ ଅଂଶର ଉଚ୍ଚତା ୮୫୦ ଫୁଟ୍ ଅଟେ । ଡେଲାଙ୍ଗ ପଟ ସଡ଼କ ଅଂଶର ଉଚ୍ଚତା ୩୦୦ ଫୁଟ୍ ।"(୧)

"ମାନଚିତ୍ରରେ ୨୦°-୧୧' ଉତ୍ତର ଅକ୍ଷାଂଶ ଓ ୮୫°-୪୦' ପୂର୍ବ ଦ୍ରାଘିମା ନିର୍ଦ୍ଦେଶ କରୁଥିବା ସ୍ଥାନ ହେଉଛି ଖୋର୍ଦ୍ଧା । ଏହାର ପାରିପାର୍ଶ୍ୱିକ ଅଞ୍ଚଳକୁ ନେଇ ଗଠିତ, ୦୧-୦୪-୧୯୯୩ରୁ ଖୋର୍ଦ୍ଧା ଜିଲ୍ଲାର ସୃଷ୍ଟି ହୋଇଛି । ଏହାର କ୍ଷେତ୍ରଫଳ ୨୮୮୭ ବର୍ଗ କିଲୋମିଟର । ଖୋର୍ଦ୍ଧା ହେଉଛି ଭୌଗୋଳିକ ବିଭବରେ ଭରା । ବରୁଣାଇ ପାହାଡ଼ ହେଉଛି ପୂର୍ବଭାଗର ଶେଷ ପାହାଡ଼। ଏହାର ପୂର୍ବକୁ ଭୂମିରୂପ ସମତଳ ବା ନିମ୍ନ ଅଞ୍ଚଳ । ସମୁଦ୍ର ପତନରୁ ଏହାର ଉଚ୍ଚତା ୧୯ମିଟର ମାତ୍ର । ଏହାର ପୂର୍ବକୁ କ୍ରମ ନିମ୍ନତା ଓ ପଶ୍ଚିମକୁ କ୍ରମ ଉଚ୍ଚତା ବୃଦ୍ଧି ପରିଲକ୍ଷିତ ହୁଏ । ହଳଦିଆ, ଧଣ୍ଡିଆ, ଚନ୍ଦକାର ଲାଙ୍ଗୁଡ଼ି ପାହାଡ଼, ଦଧିମାଛଗାଡ଼ିଆର ଟାଙ୍ଗେଣୀ, ଭୁବନେଶ୍ୱରର ଖଣ୍ଡଗିରି, ଉଦୟଗିରି ଓ ଖୋର୍ଦ୍ଧାର ବରୁଣାଇ ପ୍ରଭୃତି ପୂର୍ବଘାଟ ପର୍ବତମାଳାର ଅଂଶମାନ ବିଭିନ୍ନ ଦିଗକୁ ବିଛାଇ ହୋଇରହିଛି । କିନ୍ତୁ ବାଣପୁର ଓ ଟାଙ୍ଗିର ପାର୍ବତ୍ୟାଞ୍ଚଳ ପୂର୍ବଘାଟ ପର୍ବତମାଳାର ମୁଖ୍ୟ ଅଂଶ ଏବଂ ଖୋର୍ଦ୍ଧାର ଉଚ୍ଚତମ ସ୍ଥାନ । ଖୋର୍ଦ୍ଧାର ଟାଙ୍ଗେଣୀରୁ କଳାମୁଗୁନି ପଥର ଖଣି, ନରଣଗଡ଼ରୁ ମନ୍ଦିର ଓ ମୂର୍ତ୍ତି ଉପଯୋଗୀ ବଉଳମାଳା ପଥର ଓ ପୁବୁସାହିରୁ ମାଙ୍କଡ଼ା ପଥର ଖୋଲା ଖଣିରୁ ମିଳେ ।(୨)

ଖୋର୍ଦ୍ଧା ସହରର ପୂର୍ବ-ଦକ୍ଷିଣ ଦିଗରେ ଅବସ୍ଥିତ ବରୁଣେଇ ପର୍ବତକୁ ପ୍ରାଚୀନ ଶାସ୍ତ୍ରରେ 'ବାରୁଣୀ ପର୍ବତ ଓ ବାରୁଣାବନ୍ତ' ବୋଲି ଲେଖା ଯାଇଛି । ଅପଭ୍ରଂଶିତ ହୋଇ ଏହା ବରୁଣାଇ ଓ ବରୁଣେଇ ନାମରେ କଥିତ ହେଉଛି । ସାତ କିଲୋମିଟର ପର୍ଯ୍ୟନ୍ତ ବ୍ୟାପୀ ଲମ୍ବିରହିଛି ଏହି ପାହାଡ଼ । ଦକ୍ଷିଣ-ପଶ୍ଚିମରେ ପଲ୍ଲୀ ଗ୍ରାମଠାରୁ ଆରମ୍ଭ କରି ଉତ୍ତର-ପୂର୍ବ ଦିଗରେ ବଡ଼ତୋଟା-ବେଲପଡ଼ା ପର୍ଯ୍ୟନ୍ତ ବିସ୍ତାର ଲାଭ କରିଛି । ବିଭିନ୍ନ ସ୍ଥାନରେ ପର୍ବତ ସୋପାନଗୁଡ଼ିକ ଭିନ୍ନଭିନ୍ନ ନାମରେ ଲୋକଙ୍କ ଭାଷାରେ ନାମିତ ହୋଇଛି । ଏହି ପାହାଡ଼ମାଳା ଦୂରରୁ 'ଶ୍ରୀ ଅକ୍ଷର' ପରି ଦେଖାଯାଉଥିବାରୁ କେହି କେହି ଏହାକୁ ଶ୍ରୀ ଅକ୍ଷର ବରୁଣେଇ ପର୍ବତ ବୋଲି କହିଥାନ୍ତି । କଥା ପ୍ରସଙ୍ଗରେ ନିରକ୍ଷର ଲୋକମାନଙ୍କୁ କେହି କେହି 'ଶ୍ରୀଅକ୍ଷର ବିବର୍ଜିତ ବରୁଣେଇ ପାହାଡ଼' ବୋଲି କହିଥାନ୍ତି । କିନ୍ତୁ ବାସ୍ତବରେ 'ଶ୍ରୀ' ଯେ ଶ୍ରେଷ୍ଠ ତାହା ବରୁଣାଇ ପର୍ବତ ଯୁଗେ ଯୁଗେ ପ୍ରମାଣ କରିଆସିଛି । ପୌରାଣିକ ଯୁଗର ମହିମାଠାରୁ ପରବର୍ତ୍ତୀ ସମୟରେ ପାଇକମାନଙ୍କ ବୀରତ୍ୱ ପର୍ଯ୍ୟନ୍ତ ଏହାର ପ୍ରସିଦ୍ଧି ଯୁଗାନ୍ତକାରୀ ହୋଇଛି ।

ବରୁଣେଇ ପର୍ବତମାଳା ଭିନ୍ନଭିନ୍ନ ସ୍ଥାନରେ ଭିନ୍ନଭିନ୍ନ ନାମରେ ନାମିତ ହୋଇଥିବାବେଳେ ଏହାର ଦକ୍ଷିଣ ଅଂଶକୁ 'ଲାଞ୍ଜିଆ ପାହାଡ଼' କୁହାଯାଏ । ଲମ୍ବରେ ଏହା ପ୍ରାୟ ଦୁଇ କିଲୋମିଟର । ଏହା ମଧ୍ୟରେ ଅନେକ ଛୋଟ ଛୋଟ ପାହାଡ଼ ପୁଞ୍ଜାପୁଞ୍ଜା ହୋଇଥିବାରୁ କେହି କେହି ଏହାକୁ 'ପୁଞ୍ଜିଆ ପାହାଡ଼' କହିଥାନ୍ତି । ଏହାର ଶେଷ ସୀମା ପଲ୍ଲୀ ମୌଜା ମଧ୍ୟରେ ରହିଛି। ଗୋଟେ ସମୟରେ ଖୋର୍ଦ୍ଧା ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରୁ

ବାଜପୁର ପର୍ଯ୍ୟନ୍ତ ରାସ୍ତା ନଥିଲା । ଫଳରେ ବାଜପୁର ଅଞ୍ଚଳର ଲୋକମାନେ ସିଆଳିଆ ଅନନ୍ତବର ଠାରୁ ପଲ୍ଲୀ ହାଇସ୍କୁଲ ଦେଇ ଖୋର୍ଦ୍ଧା ଆସୁଥିଲେ । ବରୁଣାଇ ଲାଞ୍ଜିଆ ପାହାଡ଼ର ଏକ ଅଂଶ ପଥର କାଟି ରାସ୍ତା କରାଯିବା ପରେ ବାଜପୁରକୁ ଖୋର୍ଦ୍ଧାରୁ ସିଧାସଳଖ ରାସ୍ତା ହୋଇପାରିଛି । ମନେପଡ଼େ ସେଦିନର କଥା। ଚଳଚ୍ଚିତ୍ର ଅଭିନେତା ମିହିର ସ୍ୱାଇଁଙ୍କ ପିତା ୰ମାୟାଧର ସ୍ୱାଇଁ ଖୋର୍ଦ୍ଧାର ପୂର୍ତ୍ତ ବିଭାଗ ଏସ୍‌ଡିଓ ଥିଲେ । ସିଏ ଥରେ ଭୁବନେଶ୍ୱରର ରାଜ୍ୟପାଳ ପୁରସ୍କାରପ୍ରାପ୍ତ ଆଦର୍ଶ ଶିକ୍ଷକ ଦୀନବନ୍ଧୁ ସାହୁଙ୍କ ସହ ଆମ ଘରକୁ ଆସିଥିଲେ । କଥା ପ୍ରସଙ୍ଗରେ କହିଲେ, ୧୯୫୫ ମସିହାରେ ବରୁଣେଇ ଲାଞ୍ଜିଆ ପାହାଡ଼ର ଏକ ଫଲଙ୍ଗ ଦୂର ପଥର କାଟି ଖୋର୍ଦ୍ଧା ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରୁ ବାଜପୁରକୁ ସିଧା ରାସ୍ତା କରିବାକୁ ପଡ଼ିଥିଲା । ଏବେ ଏହି ରାସ୍ତା ପାର୍ଶ୍ୱରେ ପୁଲିସ ଏସ୍‌ପି ଅଫିସ୍, ଜାନକୀ ବଲ୍ଲଭ ସ୍ମୃତିଉଦ୍ୟାନ, ଜିଲ୍ଲା ଆର୍‌ଟିଓ ଅଫିସ୍, ଆଦର୍ଶ ବିଦ୍ୟାଳୟ ସହ ଖୋର୍ଦ୍ଧା ଆଇନ୍ କଲେଜର ପ୍ରସ୍ତାବିତ ଜାଗା ନିରୂପିତ ହୋଇପାରିଛି ।

ପୂର୍ବେ ଖୋର୍ଦ୍ଧାରୁ ବାଜପୁରକୁ ପଲ୍ଲୀ-କଦଳୀବାଡ଼ି ଦେଇ ଦଣ୍ଡା ରାସ୍ତା ଥିବାରୁ ପାଇକ ବିଦ୍ରୋହ ସମୟରେ ୧୮୧୭ ଏପ୍ରିଲ ୧୬ ତାରିଖ ଦିନ କ୍ୟାପଟେନ ଲି' ଫାବ୍ରେ ୫୫୦ ସୈନ୍ୟଙ୍କୁ ଧରି କଦଳୀବାଡ଼ି ଓ ବାଜପୁରରେ ଗ୍ରାମପୋଡ଼ି ଧ୍ୱଂସ କରି ପୁରୀ ଅଭିମୁଖେ ଯାଇଥିଲେ । ସେତେବେଳେ ଏହି ନୂତନ ରାସ୍ତା ନଥିବାରୁ କଦଳୀବାଡ଼ି ଦେଇ ଯିବାକୁ ବାଧ୍ୟ ହୋଇଥିଲେ ବୋଲି ମତ ରଖନ୍ତି କଦଳୀବାଡ଼ିର ବରପୁତ୍ର ତଥା ବିଶିଷ୍ଟ ସାହିତ୍ୟିକ ଡ. ଗୋପାଳକୃଷ୍ଣ ଶ୍ରୀଚନ୍ଦନ ଓ ନରୋତ୍ତମ ଶ୍ରୀଚନ୍ଦନ । ବରୁଣେଇ ପର୍ବତର ଲାଞ୍ଜିଆ ପାହାଡ଼ ଅଂଶଟି ଅନ୍ୟ ପାହାଡ଼ ଭଳି ଉଚ୍ଚ ନୁହେଁ । ଏହା ଲାଞ୍ଜ ଭଳି ଲମ୍ବିଯାଇଥିବାରୁ ଏହାକୁ 'ଲାଞ୍ଜିଆ ପାହାଡ଼' କୁହାଯାଏ । ଏହି ପାହାଡ଼କୁ ସ୍ପର୍ଶ କରି ଗ୍ରାମଗୁଡ଼ିକ ହେଲା ପଶ୍ଚିମରେ ପଲ୍ଲୀ, ଦକ୍ଷିଣରେ ସିଆଳିଆ ଓ ବ୍ରହ୍ମପୁରା, ଉତ୍ତରରେ ଗଡ଼ ଖୋର୍ଦ୍ଧା ଏବଂ ପୂର୍ବରେ ବରୁଣେଇର ଅନ୍ୟ ଏକ ପର୍ବତ ସୋପାନ ହେଉଚି 'ଘାଟି ପାହାଡ଼' ।

'ଘାଟି ପାହାଡ଼' ବରୁଣେଇର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ଏହି ପାହାଡ଼ ତଳେ ରହିଛି ଗଡ଼ଖୋର୍ଦ୍ଧା ଗ୍ରାମ ଓ ରାଜାଙ୍କ ଭଗ୍ନ ନଅରର ଧ୍ୱଂସାବଶେଷ । ଏହି ଗ୍ରାମରେ ରହିଛି ବୃନ୍ଦାବନ ଦେବ ଓଡ଼ିଆ ମଠ, କୁଞ୍ଜବିହାରୀ ମନ୍ଦିର, କପିଳେଶ୍ୱର ମନ୍ଦିର, ନୀଳକଣ୍ଠେଶ୍ୱର ମନ୍ଦିର ଆଦି ଯାହା ଖୋର୍ଦ୍ଧା ରାଜାଙ୍କ ବାହାର ପାଚେରି ମଧ୍ୟରେ ଥିଲା । ଭଗ୍ନ ଦୁର୍ଗକୁ ମନେପକାଇ ଖ୍ୟାତନାମା କବି ରମେଶ ଚନ୍ଦ୍ର ଭଞ୍ଜ 'ଖୋରଧା ଗଡ଼ର ଉଜୁଡ଼ା ପାଚେରି ଶିଳା' କବିତାରେ ଗଡ଼ର ଅତୀତ ବିଭବକୁ ନିମ୍ନମତେ ସ୍ମରଣ କରିଛନ୍ତି-

"ପୁରୁଣା ବୁରୁଜ ପାଚେରୀ ବେଢ଼ାରୁ
ମାଟିରେ ପଡ଼ିଛି ଖସି

ଆସିଅଛ ସାଥୀ, ମୁହୂରତେ ହେଲେ
ମୋ ଉପରେ ଯାଅ ବସି ।
ଦେହରେ ଅଭୁଲା, ଉଷୁମ ପାଇକ
ସାଇତିଛି ଯାହା ବୁକେ
ଗୁଳି, ଗୋଳା, ତୋପ, କମାଣ ଆଘାତ
ସହିଅଛି ଉତ୍ସୁକେ ।
ତାଳରୁ ତଳିପା ମାଖିଦେଇ ଯିବି
ସରଦାର ଶିର ଲହୁ,
ହଜିଲା ଅତୀତ ତୁମ ଛାତିତଳେ
କଣିକାଏ ହେଲେ ରହୁ ।
ଜାଣିତ ପାରିବ, ବୁଝିତ ପାରିବ
କେମିତି ସେଦିନ ଥିଲା,
କହୁଅଛି ଆଜି ଖୋରଧା ଗଡ଼ର
ଉଜୁଡ଼ା ପାଚେରୀ ଶିଳା ।
ମୋର ବୁକୁଠାରୁ ଆହୁରି କଠିନ
ପାଇକ ପୁଅର ଛାତି
ବାଘୁଣୀ ପରାୟେ ପାଇକ ତରୁଣୀ
ଅଦ୍ଭୂତ ତା'ର ଗତି ।
ଅଧରପୁଟରେ ସମର ସାଧନା
ଭରି ଦେଇଥାଏ ମଧୁ,
ଜୀବନ ମାଗୁଣି କରି ଜାଣେ ନାହିଁ
ପାଇକ କୂଳର ବଧୂ ।
ମାଆ ବରୁଣେଇ କରୁଣା କଣାକୁ
ରହିଥାଏ ସଦା ଚାହିଁ
ମରଣ ଚରଣେ ଶରଣ ପଶିବା
ଜୀବନରେ ଜାଣେ ନାହିଁ ।
ବଇରି ମହତ ଲୁଚିବା ଆଗରୁ
ପାଳଇ ଜହର ଲୀଳା
କହୁଅଛି ଆଜି ଖୋରଧାଗଡ଼ର
ଉଜୁଡ଼ା ପାଚେରି ଶିଳା ।
ରାଣୀହଂସପୁର ରତନ ପଲଙ୍କ
ରଜତ ରସାଣ ବାଡ଼
ହୀରକ ଖଚିତ କନକ କୁସୁମ

ମୋତି ମରକତ ଝାଡ଼ ।
ଦାସୀ ପରଚାରୀ, ସଖୀ ସହଚରୀ
ନିଟୋଳ ନମିତା ବାଳା,
ସଂଗୋପନରେ ସଂଚାଳୁ ଥିଲେ
ସତତ ସମର ଶୀଳା ।
ପାଟ ମହାଦେଇ ଘୋଟକ ଆରୋହୀ
କଟୀରେ କଟାରୀ ଭିଡ଼ି,
ବଇରୀ ବଢ଼େଇ ବିନାଶିକା ପାଇଁ
ରାଜ କୁଳାଚାର ଏଡ଼ି।
ପାଟ ଅଗଣାରୁ ବାଜୀ ଚାଳନାରେ
ଥରି ଉଠୁଥିଲା କିଲ୍ଲା
କହୁଅଛି ଆଜି ଖୋରଧା ଗଡ଼ର
ଉଜୁଡ଼ା ପାଚେରୀ ଶିଳା ।
ଶାଣିତ ଗାୟକ ସଂଯୋଜି ଦେଇ
ଅରାତି ଆବାସ ଭେଦି
ରିପୁକୂଳ ରଥୀ ରଣେ ରାଜଜେମା
ଆସୁଥିଲେ ଯେବେ ଛେଦି ।
ଉଆସ ଦୁଆରେ ରାଜମାତା ଆସି
ଦେଉଥିଲେ ମଥାଚୁମି
ହସି ଉଠୁଥିଲେ ମାଆ ବରୁଣେଇ
ହସୁଥିଲା ବନଭୂମି ।
କେତେ ଗାଉଥିବି ଅତୀତ ଗରବ
ହେବନାହିଁ ତାହା ଶେଷ
ପାଚେରୀ ବେଢ଼ାରୁ ଖସିପଡ଼େ ତଳେ
ଖଣ୍ଡିତ ମୋର ବେଶ ।
ବେଶିଦିନ ଆୟୁ ଦେବନାହିଁ ଆଉ
କାଳ କଙ୍କାଳ ଗିଳା
କହୁଅଛି ଆଜି ଖୋରଧା ଗଡ଼ର
ଉଜୁଡ଼ା ପାଚେରି ଶିଳା ।'

ଘାଟି ପାହାଡ଼ ତଳେ ଖୋର୍ଦ୍ଧା ରାଜାଙ୍କ ଭଗ୍ନଅର ଥିବାବେଳେ, ଗଡ଼ ଖୋର୍ଦ୍ଧା, ଜଗନ୍ନାଥପୁର (ବେଛପରି), ସାମନ୍ତରାପୁର ଗ୍ରାମ ଅଛି । ଦକ୍ଷିଣରେ ବ୍ରହ୍ମପୁରା ଓ ପୂର୍ବରେ ବରପଦା, ତରାବୋଇ ଗ୍ରାମ ରହିଛି ।

ଘାଟି ପାହାଡ଼ର ଉତ୍ତର-ପୂର୍ବ ଦିଗରେ ରହିଛି 'ପାଣ୍ଡହରା ପାହାଡ଼' । ଲାଞ୍ଜିଆ ପାହାଡ଼ ଠାରୁ ପାଣ୍ଡହରା ପାହାଡ଼ ପର୍ଯ୍ୟନ୍ତ ଶାଗୁଆନ ବୃକ୍ଷରାଜିରେ ପରିପୂର୍ଣ୍ଣ ଥିଲା । ବାଣପୁର ମାଳାଂଚଳରେ ଥିବା ଦାମିଆବୋରବରା ଜଙ୍ଗଲ ଏସିଆର ବୃହତ୍ତମ ଶାଗୁଆନ ଜଙ୍ଗଲ ଥିବାବେଳେ ବରୁଣେଇ ସଂରକ୍ଷିତ ଜଙ୍ଗଲ ଥିଲା ଏସିଆର ଦ୍ୱିତୀୟ ବୃହତ୍ତମ ଶାଗୁଆନ ଜଙ୍ଗଲ । ୧୯୯୯ ମହାବାତ୍ୟାରେ ବହୁ ଶାଗୁଆନ ଗଛ ଉପୁଡ଼ି ପଡ଼ିବା ଏବଂ ଦିନ ଦ୍ୱିପ୍ରହରରେ ଜଙ୍ଗଲ ମାଫିଆମାନଙ୍କ ଦ୍ୱାରା ଶାଗୁଆନ ଗଛ ଲୁଟ୍ ହେଉ ଥିବାରୁ ଶାଗୁଆନ ଗଛ ଦ୍ରୁତଗତିରେ ହ୍ରାସ ପାଇଛି। ଏଭଳି ବୃକ୍ଷ କ୍ଷୟରେ ବ୍ୟଥିତ ହୋଇ କବି ରମେଶ ଚନ୍ଦ୍ର ଭଞ୍ଜ ଲେଖିଛନ୍ତି-

"ମୂଳପୋଛ ମୋର ଶାଳ ଶାଗୁଆନ ବିଥି
ଚୂଳ ପୋଛ ମୋର ସଘନ- ସବୁଜ ଶିରୀ
କୁଳପୋଛ ମୋର ହରଣ-ହରିଣୀ ଯୁଥ
ଠୁଳ ଦୁଃଖ ରାଶି କହେ ବରୁଣାଇ ଗିରି ।" (୪)

ଏହି ପାଣ୍ଡହରା ପାହାଡ଼ର ପୂର୍ବ ଦିଗରେ ହରିଡ଼ାମଡ଼ା (ଜଟଣୀ ବ୍ଲକ୍), ଉତ୍ତର ଦିଗରେ ଦିଗବାରିଣୀ (ପୂର୍ବନାମ ତାଡକୀ ପାହାଡ଼), ପଶ୍ଚିମରେ ଜଗନ୍ନାଥପୁର (ବେଛପରି), ବଧା ଶବର ସାହି ଓ ଜେମାଦେଇ ଗ୍ରାମ । ଏହାର ସମ୍ମୁଖରେ ରହିଛି ଅଁଳା ଖୋଲ ଓ ଉତ୍ତରପଟ ତଳେ ରହିଛି ମଇଁଷିଆ ଖୋଲ । ପାଣ୍ଡହରା ପାହାଡ଼ ଉପରେ ରହିଛି ଶ୍ରୀରାମ ପଥର, ସୀତାକୁଣ୍ଡ; ଯାହା ତ୍ରେତୟା ଯୁଗରେ ମର୍ଯ୍ୟାଦାପୁରୁଷ ଶ୍ରୀରାମ, ପତ୍ନୀ ସୀତା ଓ ଭ୍ରାତା ଲକ୍ଷ୍ମଣଙ୍କ ସହ ଏହିସ୍ଥାନକୁ ଆସିଥିବାର ପ୍ରମାଣ ଦିଏ । ଶ୍ରୀରାମ ପଥର ଉପରେ ପ୍ରଭୁ ରାମଚନ୍ଦ୍ର ବିରାଜମାନ ହେଉଥିଲେ। ସେହିପରି ଦେବୀ ସୀତା ରୋଷଇ ସାରି ଯେଉଁସ୍ଥାନରେ ହାଣ୍ଡି ଧୋଉଥିଲେ, ତାହା ସୀତାକୁଣ୍ଡ ନାମରେ ପରିଚିତ। ଦେବୀ ସୀତା କହିଥିଲେ ଯେ, ଯେପର୍ଯ୍ୟନ୍ତ ସୃଷ୍ଟି ଅଛି, ସେ ପର୍ଯ୍ୟନ୍ତ ସେହି କୁଣ୍ଡରୁ ପାଣି ଶୁଖିବନାହିଁ। ବରୁଣାଇ ପାହାଡରଏହି ପୌରାଣିକ ମହତ୍ୱ ଯୋଗୁଁ ଖୋର୍ଦ୍ଧାବାସୀ ନିଜକୁ ଗର୍ବିତ ମନେକରନ୍ତି। ପୁନଶ୍ଚ ପାହାଡ଼ ଉପରିଭାଗରେ ପାଣ୍ଡବ ଗୁମ୍ଫା/ପାଣ୍ଡବଗୁହା/ପାଣ୍ଡବହରା ଗୁମ୍ଫା, ବାଘ ଗୁମ୍ଫା ଆଦି ମଧ୍ୟ ଅଛି। ପାଣ୍ଡବମାନେ ବନବାସ କାଳରେ ଏଠାରେ ଅବସ୍ଥାନ କରିଥିବାର ଜନଶ୍ରୁତି ରହିଛି। ପାଣ୍ଡବ ଓ କୌରବଙ୍କ ମଧ୍ୟରେ ହୋଇଥିବା ପଶାଖେଳରେ ପାଣ୍ଡବମାନେ ହାରିଯାଇଥିବାରୁ ଏହା ପାଣ୍ଡବହରା ନାମରେ ନାମିତ ବୋଲି କେତେକ ମତ ଦିଅନ୍ତି। ତେଣୁ ବରୁଣାଇ ପାହାଡ଼ ଉଭୟ ତ୍ରେତୟା ଓ ଦ୍ୱାପରଯୁଗର ମୂକସାକ୍ଷୀ ହୋଇ ରହିଛି। ପାହାଡ଼ ପଶ୍ଚିମଭାଗ ମଧ୍ୟଭାଗରେ ଅଦଲକୁଣ୍ଡ ଓ ତା'ପରେ ମା' ବରୁଣେଇଙ୍କ ମନ୍ଦିର ରହିଛି। ନିମ୍ନଭାଗରେ ଦୁଇଟି ଡାକବଙ୍ଗଳା, ଦୁଧଖାଇ ଠାକୁରାଣୀଙ୍କ ମନ୍ଦିର ଓ ଏକ ଗମ୍ଭୁଜ ରହିଛି।

ପାଣ୍ଡହରା ପାହାଡ଼କୁ ଲାଗି ରହିଛି ତାଡକୀ ପାହାଡ଼। ବରୁଣେଇ ପର୍ବତମାଳାର ଏହା ସବୁଠାରୁ ଉଚ୍ଚତମ ସୋପାନ । ଦିଗବାରେଣୀ ଖୁଣ୍ଟ ସବୁ ଏଠାରେ ସ୍ଥାପିତ ହେବା ପରେ ଲୋକମାନେ ଏହାକୁ କହିବାକୁ ଲାଗିଲେ 'ଦିଗବାରେଣୀ ପାହାଡ଼' । ପୂର୍ବେ ଶତ୍ରୁମାନେ ଯେଉଁ ଦିଗରୁ ଆସିଲେ ବି ଏହି ପାହାଡ଼ ଉପରୁ ଚଢ଼ି ଜାଣି ହେଉଥିଲା । ଏହି ସ୍ଥାନରୁ ପୁରୀ ଶ୍ରୀମନ୍ଦିର ଓ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଦୃଶ୍ୟମାନ ହେଉଥିଲା । ଏପରିକି କୁରାଢ଼ମଲ୍ଲ ନିକଟସ୍ଥ 'ନୀଳଚକ୍ର ପାହାଡ଼' ଉପରୁ ପୁରୀ ଶ୍ରୀମନ୍ଦିରର ନୀଳଚକ୍ର ଦେଖାଯାଉଥିବାରୁ ପାହାଡ଼ର ନାମ ଥିଲା ନୀଳଚକ୍ର ପାହାଡ଼ । ଏହି ପାହାଡ଼ ସହିତ ୧୧୦ (ଶହେ ଦଶ ଏକର) ଜାଗାକୁ ଶାଗମୂଲ ଦରରେ ଚଂତକତା କରି ପୁରୀ ଶ୍ରୀମନ୍ଦିର ପ୍ରଶାସନ ୧୯୯୫ରେ ମାତ୍ର ୪୫ ଲକ୍ଷ ଟଙ୍କାରେ ବିକ୍ରି କରିଦେଇଥିବାରୁ ଖୋର୍ଦ୍ଧା ଅଞ୍ଚଳ ଲୋକମାନଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ଏହି ପାହାଡ଼ର ଦକ୍ଷିଣ ପାର୍ଶ୍ୱରେ ଖୋର୍ଦ୍ଧା ରାଜାଙ୍କ ମନ୍ତ୍ରୀ ଦେଓ୍ୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କ ଭଗ୍ନ ନଅର ଓ କୂପ ଆଦି ଥିଲା ।

ଦିଗବାରିଣୀ ପାହାଡ଼ ଉପରୁ ପୂର୍ବ ଦିଗରେ ଥିବା ଡେଲାଙ୍ଗ ଜଗଦଳପୁର-ମୋଟରୀର ବିଶ୍ୱନାଥ ପାହାଡ଼, ପଶ୍ଚିମରେ ରଣପୁରର ମଣିନାଗ, ଧାନି ଓ ଗୌଣିଆ ପାହାଡ଼ ଏବଂ ଉତ୍ତର ପଶ୍ଚିମ ଦିଗରେ ଥିବା ବାଙ୍କୀର ମହାପର୍ବତ ଦୃଷ୍ଟିଗୋଚର ହୁଏ । କବିଙ୍କ ବର୍ଣ୍ଣନାରେ-

"ଭଗ୍ନୀ କରୁଣାଇ ସଙ୍ଗେ ଘେନି ଦେବୀ  
ପ୍ରତ୍ୟହ ଉଷା ପ୍ରଦୋଷେ  
ଦିଗ୍‌ବାରିଣୀ ପରେ କରନ୍ତି ଦର୍ଶନ  
ପୂତ ନୀଳାଚଳ ଦେଶେ ।  
ଭସ୍ମ ବିଲେପିତ ପତି ଲିଙ୍ଗରାଜ  
ପଦେ କରି ନମସ୍କାର  
ଲେଉଟନ୍ତି ପଦ ପ୍ରକ୍ଷାଳି ନିର୍ଝରେ  
ନିତି ଆପଣା ମନ୍ଦିର ।  
ନିମ୍ନରେ ଖୋରଧା ଅଟ୍ଟାଳିକା ରାଜି  
ଗୋଗୋଷ୍ଠ ପରାୟେ ଦିଶେ  
ମୁକୁନ୍ଦ ପ୍ରସାଦ ଜେମାଦେଇ ଅବା  
ରହିଲେ ଅତଳ ଦେଶେ ।  
ଅଦୂରେ ଦିଶଇ ପାଦପ ବେଷ୍ଟିତ  
ବସତି କୁମାରବସ୍ତ  
କୁମାର ପ୍ରସବ ଶ୍ରବଣେ ଯାହାକୁ  
ସ୍ଥାପିଥିଲେ ନରନାଥ ।" (୫)  
(ବରୁଣାଇ- ଦିବାକର ପାଟ୍ଟଶାଣୀ)

ତାଡକୀ ପାହାଡ଼ ବା ଦିଗବାରିଣୀ ପାହାଡ଼ର ଉତ୍ତର-ପୂର୍ବ ଦିଗ ତଳେ ରହିଛି ଘାଗୁଡ଼ି ବନ୍ଧ ଏବଂ ମଇଁଷିଆ ଖୋଲ ନିମ୍ନରେ ଗଉରୀ ଖୋଲ । ଏହି ବରୁଣେଇ ପାହାଡ଼ର ବିଭିନ୍ନ ଅଞ୍ଚଳ ବୁଲି ଦେଖିଛନ୍ତି ଡେଲାଙ୍ଗ ଗଡ଼ ମୋଟରୀ ଗ୍ରାମର ରୋହିତ କୁମାର ଚମ୍ପତି । ସେହି ଅଭିଜ୍ଞତାରୁ ସେ ଲେଖିଛନ୍ତି 'ବରୁଣେଇ ଦର୍ଶନ' । ପର୍ବତ ଓ ଖୋଲ ନେଇ ସେଥିରୁ କିଛି ଅଂଶ ପାଠକଙ୍କ ଅବଗତି ନିମନ୍ତେ ଅବତାରଣା କରୁଛି ।

"ଦେଖ ବରୁଣାଇ ପାହାଡ଼ ଶୋଭା ଝଟକି ଅଛି
ଖୋରଧା ଗଡ଼ର ମୁକୁଟ ମଣି ଶିର ତୋଳିଛି ।
ବନଦେବୀ ବିଜେ ପ୍ରକଟ ନାମ ଶ୍ରୀବରୁଣାଇ
ପାହାଡ଼ ଖୋଲକୁ ଦେଖିଲେ ଆଚମ୍ବିତ ଲାଗଇ ।
ଦେବୀଙ୍କ ସମ୍ମୁଖ ପୂର୍ବରେ 'ମାତା ଖୋଲ' ତା' ନାମ
'ଗଉରୀଖୋଲ' ଯେ ଦିଶଇ 'ଗବଖୋଲ' ଦୁର୍ଗମ ।
ପାହାଡ଼ର ଭରା ଜଙ୍ଗଲେ 'ଅଁଳାଖୋଲ' ଯେ ଦିଶେ
ପୁରା ପଶ୍ଚିମରେ ଦିଶଇ ଅତ୍ୟନ୍ତ ମନତୋଷେ ।
ତଳେ ଶିଳାଂଚଳ ହୋଇଲା ବୃକ୍ଷ ହୋଇଲା ପଦା
ଦୁର୍ଗ ରକ୍ଷା ଲାଗି ଥିଲା ଯେ କୂପ ହେଉଛି ମୁଦା ।
'ଶାଗୁଣା ଖୋଲ' ତା' ଦୁର୍ଗମ ପାଣ୍ଡବହରା ଖୋଲ
ଦିଗବାରେଣୀକୁ ଚଢ଼ିଲେ ପାଦ ନକରେ ବୋଲ ।
ବାଘଗୁମ୍ଫା ଦେଖ ଉପରେ ପାଣ୍ଡବ ଗୁମ୍ଫା ପାଖ
'ମହିଷାଖୋଲ' ଉପରେ ଘାଗୁଡ଼ିବନ୍ଧ ଶିଖ ।
ସୀତାକୁଣ୍ଡ ଦିବ୍ୟଝରଣା ନିତ୍ୟ ନୀର ଦେଖିବ
ଅଦଳକୁଣ୍ଡର ଝରଣା (ଜଳେ) ପାନେ ଶାନ୍ତି ଲଭିବ ।"

ଦିଗବାରିଣୀ ପାହାଡ଼ ଉପରେ ରାମାୟଣ ଯୁଗର ତାଡକୀ ରାକ୍ଷସୀ ବାସ କରୁଥିଲା ବୋଲି କିମ୍ବଦନ୍ତୀ ରହିଛି । ଏଣୁ ସେ ପାହାଡ଼ର ନାମ ଥିଲା 'ତାଡ଼କୀ ପାହାଡ଼' । ସେହିଭଳି ଗଡ଼ ହଳଦିଆ ଯିବା ପୂର୍ବରୁ ଯେଉଁ ପାହାଡ଼ଟି ପଡ଼େ ତା'ର ନାମ ତାଡ଼କୀ ପାହାଡ଼ । ଏହି ପାହାଡ଼ଟି ଡମପଡ଼ା ହସ୍ତୀ ଅଭୟାରଣ୍ୟ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଛି । ଦିଗବାରେଣୀ ପାହାଡ଼ର ଉତ୍ତର ଦିଗକୁ ଲମ୍ବି ରହିଛି 'କାଣ୍ଡଘଷା ପାହାଡ଼' । କେହି କେହି ଏହାକୁ 'ତୀରଘଷା ପାହାଡ଼' କହିଥାନ୍ତି । ଏହି ପାହାଡ଼ରେ ପାଇକମାନେ ତୀର ବା କାଣ୍ଡକୁ ଘଷି ତୀକ୍ଷ୍ଣ କରୁଥିଲେ । ତୀର ମାରିବାରେ ସେମାନଙ୍କର ଅବ୍ୟର୍ଥ ନିଶାଣ ଥିଲା । ଗରିଲା ଯୁଦ୍ଧର ପ୍ରଶିକ୍ଷଣ ପାଇଁ ଏହା ପ୍ରକୃଷ୍ଟ ସ୍ଥାନ ଥିଲା । ଅଶୀ ଚାଳନା ସହିତ ତୀର ଚାଳନାରେ ପାଇକମାନେ ପଟୁଥିଲେ । ଏଇ କବିତା ପଦରୁ ତାହା ବେଶ୍ ଅନୁମେୟ "ଏପଟରୁ ଯଦି ଛାଡୁଥିଲେ ସିଏ ଶର, ଆରପଟେ ଯାଇ ଲକ୍ଷ୍ୟଭେଦି ତା'

ଦେଉଥିଲା ପ୍ରତ୍ୟୁତ୍ତର ।” ପାଇକମାନେ ମଝିରେ ମଝିରେ ବଣ୍ୟ ଜନ୍ତୁ ଶିକାର କହି ନିଜ ଶକ୍ତିର ପରୀକ୍ଷା କରୁଥିଲେ । ବାଘ ଶିକାର ପାଇଁ ବିଷାକ୍ତ ଶର ବ୍ୟବହାର କରୁଥିଲେ । କାଣ୍ଡକୋଦଣ୍ଡ ସାହାଯ୍ୟରେ କିଭଳି ବିଷାକ୍ତ ଶର ମରାଯାଏ ଓ ପ୍ରସ୍ତୁତ କରାଯାଏ ତା'ର ବର୍ଣ୍ଣନା ଏହିପରି-

"ପୁଂସ ଘୋଡ଼ର ମୂତକୁ ସମ୍ପାଦି
ଫଳ ତତାଇ ରଖିବ ଯେ କୁନ୍ଦି ।
ତାକୁ ମୂତରେ ବତୁରାଇ ଦେବ
ଏହି ମତେ ତିନି ପୁଟ କରିବ ।
ଏହି ମତେ ଫୁଟିଲେ ଫଳାମାନ ।
ଦେହେ ବାଜିଲେ ଘେନିବ ପରାଣ ।' (୭)

ପ୍ରାଚୀନ ଯୁଦ୍ଧ ବିଦ୍ୟାରେ ବାଟୁଳି ଚାଳନା ଓ ଧର୍ନୁବିଦ୍ୟା ପ୍ରାଧାନ୍ୟ ପାଇଥିଲା, ସେଥିପାଇଁ ପାଇକ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ 'ପାଇକବଧୁର ଉଦ୍‌ବୋଧନ'ରେ ଲେଖିଛନ୍ତି-

"ଯିବା ପାଇଁ ହେବ ରଣ ପ୍ରାଙ୍ଗଣେ
ଯିବା ପାଇଁ ହବ ବୀର
ମାରିବାକୁ ହେବ ଲକ୍ଷ ସଇନି
ଫୋପାଡ଼ି ଲକ୍ଷ ତୀର ।" (୮)

ଧନୁର ତୀରକୁ ତୀକ୍ଷ୍ଣ କରିବା ଏବଂ ତୀର ଦ୍ୱାରା ବନ୍ୟପଶୁ ଶିକାର କରିବା ପାଇଁ ଅଧିକ ଉପଯୋଗୀ ଥିବା କାଣ୍ଡଘଷା ଆଜି ସ୍ମୃତି। ଏହି ପାହାଡ଼ର ପଶ୍ଚିମ ଦିଗରେ ଜେମାଦେଇ ଓ ମୁକୁନ୍ଦ ପ୍ରସାଦ ଗ୍ରାମ ଅବସ୍ଥିତ । ପାହାଡ଼ ପଶ୍ଚିମ ସମ୍ମୁଖ ଭାଗରେ ଥିଲା ବିସ୍ତୀର୍ଣ୍ଣ ପ୍ରାନ୍ତର । ଶାଗୁଆନ ଗଛ ମଧ୍ୟ ସେଠାରେ ଲାଗିଥିଲା । ଏବେ ଏହି ସ୍ଥାନରେ ଶିଳାଂଚଳ ଗଢ଼ି ଉଠିଛି । କିନ୍ତୁ ନିଯୁକ୍ତି କ୍ଷେତ୍ରରେ ସ୍ଥାନୀୟ ଲୋକଙ୍କୁ ଗୁରୁତ୍ୱ ଦିଆଯାଇନାହିଁ । ବହୁ କର୍ମଚାରୀ ଓ ଅଧିକାରୀ ଓଡ଼ିଶା ବାହାରୁ ଥିବା ଜଣାପଡ଼େ । ବରଂ ଶିଳ୍ପାଂଚଳ ଯୋଗୁଁ କଳ କାରଖାନା ଧୂଆଁରେ ଜନଜୀବନ ପ୍ରବାହିତ ହେଉଛି । ବରୁଣେଇର ଦୁଃଖ ପାଲଟିଛି ଖୋର୍ଦ୍ଧା ଶିଳ୍ପାଂଚଳ। ଦିନକୁ ଦିନ ବରୁଣେଇର ପ୍ରାକୃତିକ ବିଭବ ଲୋପପାଉଛି, ପରିବେଶ ନଷ୍ଟ ହେଉଛି। ଶିଳ୍ପାଂଚଳରେ ଥିବା ୪/୫ ଫୁଟ ମୋଟେଇର ୪୦୦/୫୦୦ ଫୁଟ ଗଭୀରର ୩୫୮ଟି ବୋରୱେଲ ଦ୍ୱାରା ଜଳଶୋଷଣ ହେଉଥିବାରୁ ସହରରେ ଜଳର ଅଭାବ ଦେଖାଦେଉଛି । ଏହା ହିଁ ଦୁଃଖ ଓ ବିଡ଼ମ୍ବନାର ବିଷୟ।

କାଣ୍ଡଘଷା ପାହାଡ଼ର ପୂର୍ବ ଦିଗରେ ଖୁଦୁପୁର, ପୋଡ଼ପଡ଼ା ଓ କଂସପଦା ଗ୍ରାମ ସହିତ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ରହିଛି । ଅରଗୁଳଠାରେ ପ୍ରତିଷ୍ଠା ହୋଇଥିବା ଓଡ଼ିଶାର ପ୍ରଥମ

ଆଇଆଇଟି ବରୁଣାଇର ଏହି କାଣ୍ଡଘଷା ପାହାଡ଼ ପୂର୍ବ ସୀମାନ୍ତରୁ ଅରଗୁଳ ପର୍ଯ୍ୟନ୍ତ ଲମ୍ବିଯାଇଛି । କାଣ୍ଡଘଷା ପାହାଡ଼ର ଉତ୍ତର ଦିଗରେ ରହିଛି 'ବାଘକୋରଡ଼ ପାହାଡ଼' । ଏହା ତିନୋଟି ପାହାଡ଼ର ସମଷ୍ଟି । କାଣ୍ଡଘଷା ପାହାଡ଼ ଓ ବାଘକୋରଡ଼ ପାହାଡ଼ର ଗୋଟିଏ ଅଂଶର ମଧ୍ୟଭାଗରେ ରହିଛି ୧୨୦ ଫୁଟ୍ ଗଭୀର ଓ ୨ଫୁଟ୍ ଓସାରର ଏକ ଖୋଲ ଓ ଗର୍ଭ । ଏହାକୁ 'ଶାଗୁଣାଖୋଲ' କୁହାଯାଏ। ନାମର ବୈଶିଷ୍ଟ୍ୟରୁ ଜଣାପଡ଼େ ଏହି ଖୋଲ ମଧ୍ୟରେ ଗାଈଗୋରୁ, ମଇଁଷି ଆଦି ପଡ଼ିଲେ କେହି ବଂଚନ୍ତି ନାହିଁ । ଫଳରେ ସେହି ମଡ଼ାର ମାଂସ ଖାଇବା ପାଇଁ ଚିଲ ଶାଗୁଣା ବହୁ ସଂଖ୍ୟାରେ ଜମା ହୁଅନ୍ତି । ଏଥିରୁ ଏହା ଶାଗୁଣାଖୋଲ ନାମରେ ନାମିତ ହୋଇଥିବା ଜଣାପଡ଼େ । ବାଘକୋରଡ଼କୁ ଲାଗି ଲାଗିଥିବା ୩ଟି ପାହାଡ଼ ମଧ୍ୟରୁ ଗୋଟିଏ ପାହାଡ଼ରେ ଥିବା ଏକ ଗୁମ୍ଫା ଓ ସୁଡ଼ଙ୍ଗର ସନ୍ଧାନ ୨୦୧୪ ମସିହାରେ ମିଳିଥିଲା । ଏହା ଗଣମାଧ୍ୟମରେ ପ୍ରଚାର, ପ୍ରସାର ହେବାପରେ ଆଲୋଡନ ସୃଷ୍ଟି କରିଥିଲା । ପାଇକମାନେ ଏହି ସୁଡ଼ଙ୍ଗ ଉପଯୋଗ କରୁଥିଲେ ବୋଲି ପ୍ରକାଶ ପାଇଥିଲା । ହୁଏତ ଏହା ଠିକ୍ ହୋଇପାରେ । କିନ୍ତୁ ଏହି ସୁଡ଼ଙ୍ଗ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ପର୍ଯ୍ୟନ୍ତ ଯାଇଥିବା ଲୋକଙ୍କ ଉକ୍ତିକୁ ଉଦ୍ଧାର କରି ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । କିନ୍ତୁ ଏହା ବିଶ୍ୱାସଯୋଗ୍ୟ ନୁହେଁ । ଏହି ପାହାଡ଼ ବଡ଼ତୋଟା ଓ ବେଲପଡ଼ା ଗ୍ରାମସୀମା ସଂଲଗ୍ନ ।

ଏହି ତିନୋଟି ପାହାଡ଼ ପରେ ଶେଷ ପାହାଡ଼ଟି 'ମସୁ ମୁଣ୍ଡିଆ' ନାମରେ ନାମିତ । ତାହା ବେଲପଡ଼ା-ଖୋଲାଦ୍ୱାର ନିକଟରେ । ବରୁଣାଇ ପର୍ବତମାଳା ଦକ୍ଷିଣରେ ଲାଞ୍ଜିଆ ପାହାଡ଼ ମାଳାଠାରୁ ଉତ୍ତର-ପୂର୍ବରେ ବେଲପଡ଼ା- ଖୋଲାଦ୍ୱାର ନିକଟରେ ଥିବା ମସୁ ମୁଣ୍ଡିଆ ପର୍ଯ୍ୟନ୍ତ ଦୀର୍ଘ ସାତ କି.ମି. ଦୂର ବ୍ୟାପୀ ରହିଛି । ଘାଟି, ଗୁମ୍ଫା, ଖୋଲ ଆଦି ଥାଇ ଘଞ୍ଚ ଲଟା ଝଟା ଜଙ୍ଗଲରେ ପର୍ବତଶ୍ରେଣୀ ପରିପୂର୍ଣ୍ଣ ଥିବାବେଳେ ପାଦଦେଶ ଶାଗୁଆନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଭିନ୍ନ ଭିନ୍ନ ସମୟରେ ଥିବା ଭୌଗୋଳିକ ଚିତ୍ର ମଧ୍ୟ ବଦଳି ବଦଳି ଯାଉଛି । ଖୋର୍ଦ୍ଧାଗଡ଼ରେ ରାଜା ରହୁଥିବାବେଳେ ଖୋର୍ଦ୍ଧା ଗଡ଼ରୁ ବରୁଣେଇ ଏବଂ ସେଠାରୁ ବଡ଼ତୋଟା ଗ୍ରାମର ପଶ୍ଚିମ ପାଖ ଦେଇ ଏକ ରାସ୍ତା ଗଙ୍ଗପଡ଼ାର ଗଙ୍ଗେଶ୍ୱର ମନ୍ଦିର ପର୍ଯ୍ୟନ୍ତ ଏକ ଦଣ୍ଡା ରାସ୍ତା ଥିଲା। ରାଣୀମାନେ ଖୋର୍ଦ୍ଧାଗଡ଼ରୁ ଗଙ୍ଗେଶ୍ୱର ମନ୍ଦିରକୁ ଦର୍ଶନ ପାଇଁ ପାଲିଙ୍କିରେ ଏହି ରାସ୍ତା ଦେଇ ଆସୁଥିଲେ । ସମ୍ପ୍ରତି ଏହି ଦଣ୍ଡା ରାସ୍ତା ସରକାରୀ ନକ୍ସାରେ ଥିଲେ ମଧ୍ୟ ଜମିମାଲିକମାନେ ଦଣ୍ଡା ରାସ୍ତାକୁ ନିଜ ନିଜ ଜମିରେ ମିଶାଇ ଦେଇଛନ୍ତି ବୋଲି ଗଙ୍ଗପଡ଼ାର ଶିକ୍ଷକ ଦେବରାଜ ପ୍ରଧାନ ମତ ରଖନ୍ତି । ଗଙ୍ଗେଶ୍ୱର ମନ୍ଦିରରେ ପାଇକ ବୀର ବକ୍ସି ଜଗବଂଧୁ ପୂଜା କରୁଥିବାର କୁହାଯାଏ। ପ୍ରଭୁ ଗଂଗେଶ୍ୱର ଥିଲେ ବକ୍ସିଙ୍କ ପରମ ଆରାଧ୍ୟ ଠାକୁର।

ବରୁଣେଇର ପୂର୍ବ ଶୋଭା ଓ ପ୍ରାକୃତିକ ପରିବେଶରେ ବହୁ ପରିବର୍ତ୍ତନ ଘଟିଛି। ୧୯୯୮ ମସିହା ଜାନୁଆରୀ ୧ ତାରିଖରୁ ୭ ତାରିଖ ପର୍ଯ୍ୟନ୍ତ ବରୁଣାଇ ଓ ପାହାଡ଼ର

ପାଦଦେଶରେ ଅନୁଷ୍ଠିତ ହୋଇଥିଲା ଭାରତରେ ୧୩ତମ ସାର୍କ ଜାମ୍ବୋରୀ ଏବଂ (ସାର୍କ) ସାଉଥ୍ ଏସିଆ ଆଂଚଳିକ ଦେଶମାନଙ୍କର ସ୍କାଉଟ ଗାଇଡ୍ ଶିବିର, ଯାହା ଭାରତରେ ପ୍ରଥମ କରି ହୋଇଥିଲା । ଓଡ଼ିଶାର ତତ୍କାଳୀନ ଉପମୁଖ୍ୟମନ୍ତ୍ରୀ ବସନ୍ତ କୁମାର ବିଶ୍ୱାଳ ସ୍କାଉଟ ଓ ଗାଇଡ୍ ସଂସ୍ଥାର ସର୍ବଭାରତୀୟ ଉପସଭାପତି ଥାଇ ତାହା ବରୁଣାଇ ପ୍ରାନ୍ତରରେ କରାଇବାକୁ ସମର୍ଥ ହୋଇଥିଲେ । ଏଥିରେ ଭାରତର ସବୁ ପ୍ରଦେଶ, ଦକ୍ଷିଣ ପୂର୍ବ ଏସିଆର ପାକିସ୍ତାନ, ଶ୍ରୀଲଙ୍କା, ବଙ୍ଗଳାଦେଶ, ମିଆଁମାର, ଜାପାନ, ଇଣ୍ଡୋନେସିଆ ସମେତ ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, କାନାଡ଼ା ଆଦି ମୋଟ ୧୪ଟି ଦେଶର ପ୍ରତିନିଧି ଯୋଗ ଦେଇଥିଲେ । ଏଥିରେ ମୋଟ ୨୭ ହଜାର ପ୍ରତିନିଧି ଯୋଗଦେଇଥିଲେ । ଏହି କାର୍ଯ୍ୟକ୍ରମ ସଂପାଦନ ପାଇଁ ତତ୍କାଳୀନ ରାଜ୍ୟ ସ୍କାଉଟ୍ କମିଶନର କାଳିପ୍ରସାଦ ମିଶ୍ର, ଜିଲ୍ଲାପାଳ ସର୍ବେଶ୍ୱର ମହାନ୍ତି ଦୀର୍ଘ ଛ' ମାସ ଧରି କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସମେତ କେନ୍ଦ୍ରମନ୍ତ୍ରୀ, ଭାରତ ସ୍କାଉଟ୍ କମିଶନର ପ୍ରମୁଖ ବହୁ ବିଶିଷ୍ଟ ବ୍ୟକ୍ତି ଅତିଥି ଭାବେ ଯୋଗ ଦେଇଥିବାବେଳେ, ପ୍ରାଣନାଥ କଲେଜର ଅଧ୍ୟକ୍ଷ ମେଜର କ୍ଷୀରୋଦ ପ୍ରସାଦ ମହାନ୍ତି, ନଗରପାଳ ଜ୍ୟୋତିରିନ୍ଦ୍ରନାଥ ମିତ୍ର ଏବଂ ଖୋରଧା ମଣ୍ଡଳ ସ୍କାଉଟ୍ ସଂଗଠନ ପକ୍ଷରୁ ଜିଲା କମିଶନର ଭୀମସେନ ପ୍ରଧାନ, ଗାଇଡ୍ କମିଶନର ଜ୍ୟୋସ୍ନା ବିଶ୍ୱାଳ, ନିହାର ରଂଜନ ମହାନ୍ତି, ଅରୁଣା ତ୍ରିପାଠୀ, ରମେଶ ମିଶ୍ର, ଗୋକୁଳାନନ୍ଦ ମହାନ୍ତି, ନଟବର ସ୍ୱାଇଁ, ଅଧ୍ୟାପକ ଗୋପାଳକୃଷ୍ଣ ଦାସ, ରାମମୂର୍ତ୍ତି ଦୋରା, କାଳିଚରଣ ଜୟସିଂହ, ସୁବାସ ଚନ୍ଦ୍ର ମିଶ୍ର, ପୀତବାସ ପଟ୍ଟନାୟକ, ନଗେନ୍ଦ୍ରନାଥ ଦତ୍ତ, ଜବାହରଲାଲ ସୁବୁଦ୍ଧି ପ୍ରମୁଖ ଆୟୋଜନ ଦାୟିତ୍ୱ ନେଇଥିଲେ । ଏହି ଚିତ୍ତାକର୍ଷକ କାର୍ଯ୍ୟକ୍ରମ ପାଇଁ ବରୁଣେଇ ମନ୍ଦିର ସଜ୍ଜିତ ହୋଇଥିଲା ଏବଂ ବରୁଣାଇ ଯିବା ରାସ୍ତାରେ ଏକ ସୁଦୃଶ୍ୟ ପ୍ରସ୍ତର ତୋରଣ ଉପମୁଖ୍ୟମନ୍ତ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କ ଦ୍ୱାରା ନିର୍ମାଣ ହୋଇଥିଲା । ବଡ଼ତୋଟାଠାରୁ ବରୁଣେଇ ମନ୍ଦିର ପର୍ଯ୍ୟନ୍ତ ଦୀର୍ଘ ଦୁଇ କି.ମି. ବ୍ୟାପୀ ଯେଉଁ ଅଞ୍ଚଳ ସ୍କାଉଟ୍ ଶିବିର ଦ୍ୱାରା ପରିପୂର୍ଣ୍ଣ ହୋଇଥିଲା, ତାହା ପରବର୍ତ୍ତୀ ସମୟରେ ବିଭିନ୍ନ ବୃକ୍ଷରାଜିରେ ପରିଶୋଭିତ କରାଇ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିବାର ଯୋଜନା ରଖିଥିଲେ ବସନ୍ତ କୁମାର ବିଶ୍ୱାଳ। ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମଧ୍ୟ ସେ ପ୍ରସ୍ତାବରେ ସମ୍ମତ ହୋଇଥିଲେ । କିନ୍ତୁ ସେ ପ୍ରସ୍ତାବ ସ୍ୱପ୍ନରେ ରହିଗଲା ।

ଏହାପରେ ୨୦୦୬ ମସିହାରେ ବରୁଣେଇ ପାଦଦେଶରେ ଉକ୍ତ ଅଞ୍ଚଳର ସୁରକ୍ଷା ତଥା ପରିବେଶର ଶ୍ରୀବୃଦ୍ଧି ପାଇଁ କଳିଙ୍ଗ ପାଇକ ସଂଗଠନ ପକ୍ଷରୁ ଔଷଧୀୟ ବୃକ୍ଷର ଦଶ ହଜାର ଚାରାରୋପଣ କରାଯାଇଥିଲା । ଏହି କାର୍ଯ୍ୟକ୍ରମରେ ପ୍ରାକ୍ତନ ମନ୍ତ୍ରୀ ତଥା ଆନ୍ଧ୍ରର ରାଜ୍ୟପାଳ ମାନନୀୟ ବିଶ୍ୱଭୂଷଣ ହରିଚନ୍ଦନ, ମନ୍ତ୍ରୀ କାହ୍ନୁଚରଣ ଲେଙ୍କା, ମନ୍ତ୍ରୀ ସୁରେନ୍ଦ୍ରନାଥ ନାୟକ, ସାଂସଦ ଡ. ପ୍ରସନ୍ନ କୁମାର ପାଟଶାଣୀ, ମନ୍ତ୍ରୀ ହରିହର ସ୍ୱାଇଁ, ବିଧାୟକ ଜ୍ୟୋତିରିନ୍ଦ୍ର ନାଥ ମିତ୍ର, ପୂର୍ବତନ ମନ୍ତ୍ରୀ ଡା. ବେଣୁଧର ବଳିଆରସିଂହ, କବି ସତ୍ୟାନନ୍ଦ ଚମ୍ପତିରାୟ,

କଳିଙ୍ଗ ପାଇକ ସଂଗଠନର ହଟନାଥ ମଙ୍ଗରାଜ, ଇଂ ଶିଶିର କୁମାର ନାୟକ, ଭୀମସେନ ପ୍ରଧାନ, ଡ. ଦିଲ୍ଲୀପ କୁମାର ଶ୍ରୀଚନ୍ଦନ, ବଂଶୀଧର ଜଗଦ୍ଦେବ, ସୁରେଶ ରାଉତରାୟ, ଡ. ଲକ୍ଷ୍ମୀନାରାୟଣ ରାଜସିଂହ, ମୁରଲୀଧର ପ୍ରଧାନ, ପ୍ୟାରୀମୋହନ ସାମନ୍ତରାୟ, ରୁଷି ଗୁମାନସିଂହ, ସାରଙ୍ଗଧର ବଳିଆରସିଂହ, ଅକ୍ଷୟ କୁମାର ହରଚନ୍ଦନ, କାଳିଚରଣ ଜୟସିଂହ, ଐତିହାସିକ ସତ୍ୟବାଦୀ ବଳିଆରସିଂହ, ବିଚିତ୍ରାନନ୍ଦ ଚମ୍ପତିରାୟ, ବିଚିତ୍ରାନନ୍ଦ ରାଉତରାୟ (ତାପଙ୍ଗ ଦଳବେହେରା), ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର, କାଳୁଚରଣ ଛୋଟରାୟ, ପ୍ରଭାକର ହରିଚନ୍ଦନ, ଅଜୟ କୁମାର ଜଗଦ୍ଦେବ, ନିରଞ୍ଜନ ସାମନ୍ତସିଂହାର, ଭଗବାନ ପଶ୍ଚିମକବାଟ, ଶିଶିର କୁମାର ପାଇକରାୟ, ବାଲ୍ମୀକ ବଳିଆରସିଂହ, ପ୍ରଫୁଲ୍ଲ କୁମାର ସାମନ୍ତରାୟ, କୃଷ୍ଣଚନ୍ଦ୍ର ହରିଚନ୍ଦନ, ସଂଗ୍ରାମ ଜଗଦ୍ଦେବ, ରମଜାନ ଖାଁ, ଧରଣୀଧର ଛୋଟରାୟ, ଗୋଦାବରୀଶ ପାଇକରାୟ, ରାମଚନ୍ଦ୍ର ପ୍ରଧାନ, ସମରେନ୍ଦ୍ର ବଳିଆରସିଂହ ପ୍ରମୁଖଙ୍କ ଉପସ୍ଥିତିରେ ଦୁଇ ହଜାରରୁ ଊର୍ଦ୍ଧ୍ୱ ପାଇକ ସଂଗଠନର କର୍ମୀମାନେ ବୃକ୍ଷରୋପଣ କରିଥିଲେ । ଦୀର୍ଘ ୫ବର୍ଷ ଧରି ରକ୍ଷଣାବେକ୍ଷଣ ସହିତ ଖାଲି ଜାଗାମାନଙ୍କରେ ନୂତନ ଚାରାରୋପଣ କରାଯାଉଥିଲା । ମଝିରେ ମଝିରେ ଥିବା ଶାଗୁଆନ ବୃକ୍ଷଗୁଡ଼ିକ ମଧ୍ୟ ନିରାପଦ ଥିଲା । କିନ୍ତୁ ସରକାରଙ୍କ ଶିଳ୍ପାଂଚଳ ସମ୍ପ୍ରସାରଣ, ଇଞ୍ଜିନିୟରିଂ କଲେଜ ଓ ଏମ୍‌ବିଏ କଲେଜ ସଂସ୍ଥାପନ, ଖଳଲୋକଙ୍କ ଦ୍ୱାରା ଅଗ୍ନି ସଂଯୋଗ କରି ବୃକ୍ଷରାଜିର ଧ୍ୱଂସ ସାଧନ ଏବଂ ରାତାରାତି ଶାଗୁଆନ ବୃକ୍ଷ ଛେଦନ ଆଦି ଯୋଗୁଁ କଳିଙ୍ଗ ପାଇକ ସଂଗଠନର ଔଷଧୀୟ ବୃକ୍ଷରୋପଣ ମହତ୍ ଉଦ୍ଦେଶ୍ୟ ସଫଳ ହୋଇପାରିଲା ନାହିଁ । ସେଥିପାଇଁ 'ଦରବାର' କାବ୍ୟରେ କବିବର ରାଧାନାଥ ରାୟଙ୍କ ଲେଖା ମନେପଡ଼େ–

"ରକ୍ଷଣ, ପାଳନ, ଭୋଗ ଏ ଧରାର
ତିନି କାର୍ଯ୍ୟେ କଲ ତୃତୀୟକୁ ସାର
ପରସେବା ଲାଗି ତୁମ୍ଭର ଜନମ
ଆତ୍ମସେବା କଲ ମୌଳିକ ଧରମ ।"

ଶିଳ୍ପାଂଚଳ ଯୋଗୁଁ ଜଙ୍ଗଲ ସମ୍ପଦ ଧ୍ୱଂସ ହେଲା, କାରଖାନା ଯୋଗୁଁ ପ୍ରଦୂଷଣ ବଢ଼ି ଚାଲିଲା । ତେଣୁ ଏବେ ସଂକଟର ସମୟ। ବରୁଣେଇ ସୁରକ୍ଷା ତଥା ଶ୍ରୀବୃଦ୍ଧି ପାଇଁ ସାଧାରଣଙ୍କଠାରୁ ଆରମ୍ଭ କରି ପ୍ରାଶାସନିକ ଅଧିକାରୀ ଓ ରାଜନେତାଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ସଚେତନ, ଯତ୍ନଶୀଳ ଓ ସହଯୋଗ ପାଇଁ ଆଗେଇ ଆସିବା ଉଚିତ । ବରୁଣେଇ ସଂରକ୍ଷିତ ଜଙ୍ଗଲ ୪୮୬.୬ ହେକ୍ଟର ବା ୧୨୧୭ ଏକର ସରକାରୀ କାଗଜପତ୍ରରେ ରହିଛି । ଏହି ଜଙ୍ଗଲର ସୁରକ୍ଷା ପାଇଁ ୧୯୧୬ ମସିହାରେ ପଣ୍ଡିତ ଗୋପବଂଧୁ ଦାସ ପ୍ରୟାସ କରିଥିଲେ। ଏହାପରେ ସେଠାରେ ଶାଗୁଆନ ଚାରା ରୋପଣ କରାଯାଇଥିଲା । ଏହା ନିମ୍ନମତେ ଜଣାପଡ଼େ । "A meeting was held for the protection of khurda forest under the chairmanship of Pandit Gopabandhu Dash in the year

1916. Sri Thakkar the memeber of Bharat Seva Samittee present in that occassion. The report of Khurda Forest Grievance committee was published in 1923, Mr. H. Macpherson I.C.S. The Chief member discussed with Pandit Godabarish Mishra about the forest problem of khurda Bihar Orissa council."(9)

ବରୁଣେଇ ଜଙ୍ଗଲର ସୁରକ୍ଷା ପାଇଁ ଜନତା ସଚେତନ ନଥିବା ବେଳେ ଜଙ୍ଗଲ ବିଭାଗ ମଧ୍ୟ ଉଦାସୀନ । ପରିବେଶବିତ୍ ପ୍ରଫେସର ଡ. ନାରାୟଣ ହଜାରୀଙ୍କ ନେତୃତ୍ୱରେ ୨୦୧୧ ମସିହା ପାହାଡ଼ ସଂଲଗ୍ନ ୧୭ଟି ଗ୍ରାମକୁ ଯାଇ ଗ୍ରାମସଭା କରାଯାଇ ସଚେତନତା କରାଯାଇଥିଲା । କିନ୍ତୁ କିଛି ଅସାଧୁ ଲୋକଙ୍କ ଜଙ୍ଗଲ ଲୁଟ୍ ଓ ଶିଳ୍ପାଂଚଳ ପ୍ରତିଷ୍ଠା ଯୋଗୁଁ ଜଙ୍ଗଲ ସମ୍ପଦ ଧ୍ୱଂସ ହୋଇଛି ଏହା ନିଃସନ୍ଦେହରେ କୁହାଯାଇପାରେ। ଏଥିରେ ବ୍ୟଥିତ ହୋଇ କବି ରମେଶ ଚନ୍ଦ୍ର ଭଞ୍ଜ ଲେଖିଛନ୍ତି-

"ଏବେ ମୋର ଧାରେ କଳକାରଖାନା ଗଢ଼ି
ବଢ଼ାଇ ଚାଲିଲେ ବେପାର ବଣିଜ ସୁଅ
ବିଗତ ବିଭବ ସମର ସାଧନା ସମ
କେଉଁ ଆଡ଼େ ଗଲା କା' ଆଗେ କହିବି କୁହ ?" (୧୦)

**ତଥ୍ୟଧାରିକା :**

୧. ପ୍ରଫେସର ନରସିଂହ ପୃଷ୍ଟି - ଅବସରପ୍ରାପ୍ତ ଭୂଗୋଳ ବିଭାଗ ମୁଖ୍ୟ, ରେଭେନ୍ସା କଲେଜ, କଟକ
   ପୁନଃ ଉଦ୍ଧୃତ- ଖୋରଧା ସହରର ସଂକ୍ଷିପ୍ତ ଭୂଗୋଳ- ଅଲେଖ ଦାଶ- ପୃଷ୍ଠା- ୧୪, ୧୫
୨. ଭୂଗୋଳ ପୋଥିରେ ଖୋରଧା- (କସ୍ତୁରୀ ପୃ-୨୪)- ଅଲେଖ ଦାଶ
୩. ଉଜୁଡ଼ା ପାଚେରିଶିଳା- ରମେଶ ଚନ୍ଦ୍ର ଭଞ୍ଜ
୪. କହେ ବରୁଣେଇ ଗିରି- ରମେଶ ଚନ୍ଦ୍ର ଭଞ୍ଜ
୫. ବରୁଣାଇ- ପୃ-୪୩, ଦିବାକର ପାଟ୍ଟଶାଣୀ (କୁମାରବସ୍ତ)
୬. ବରୁଣାଇ ଦର୍ଶନ- ରୋହିତ କୁମାର ଚମ୍ପତି (ଗଡ଼ମୋଟରୀ, ଡେଲାଙ୍ଗ, ପୁରୀ)
୭. ଓଡ଼ିଶାର ଐତିହ୍ୟ, ପୃ-୭୫, ପ୍ରଫେସର ଧ୍ରୁବଚରଣ ଜୟସିଂହ ପାଇକରାୟ (ଖୁଦୁପୁର, ଜଟଣୀ)
୮ ପାଇକବଧୂର ଉଦ୍‌ବୋଧନ- କୃଷ୍ଣଚନ୍ଦ୍ର ତ୍ରିପାଠୀ
୯. Highlights of Khurda and historic Barunei, P-50 By Gopal Krishna Das
୧୦. କହେ ବରୁଣେଇ ଗିରି- ରମେଶ ଚନ୍ଦ୍ର ଭଞ୍ଜ ●●●

### ଅଧ୍ୟାୟ # ୩

# କପିଳ ସଂହିତାରେ ପର୍ବତର ମହିମା

ବରୁଣେଇ ଠାକୁରାଣୀ ଓ ମନ୍ଦିର ପ୍ରତିଷ୍ଠାର ବହୁ ପୂର୍ବରୁ ବାରୁଣୀ ପର୍ବତ ଥିଲା । ବାରୁଣୀ ପର୍ବତରୁ ବରୁଣେଇ ଓ ବରୁଣାଇ ଆଦି ନାମ ଉତ୍ପନ୍ନ ହୋଇଛି । ଏଠାରେ ଠାକୁରାଣୀ ସ୍ଥାପିତ ହେବାରୁ ଠାକୁରାଣୀଙ୍କ ନାମ ପର୍ବତର ନାମରେ ବରୁଣେଇ ହେଲା । କପିଳ ମୁନି ବହୁ ପ୍ରାଚୀନ କାଳରୁ ଓଡ଼ିଶାର ବିଭିନ୍ନ ପୀଠର ମହିମା ଉପରେ 'କପିଳ ସଂହିତା'ରେ ଉଲ୍ଲେଖ କରିଛନ୍ତି । ଚାଲନ୍ତୁ ଜାଣିବା, କପିଳ ମୁନି ବରୁଣେଇ ଉପରେ କ'ଣ ଲେଖିଛନ୍ତି-

ଅଷ୍ଟାବିଂଶୋଽଧ୍ୟାୟଃ
ବାରୁଣୀଗିରି ନିରୂପଣମ୍

**ଇନ୍ଦ୍ରଦ୍ୟୁମ୍ନ ଉବାଚ**

ହେ ନାରଦ ମୁନି ଶ୍ରେଷ୍ଠ ତ୍ୱୟା ଯତ୍ କଥିତଂ ପୁରା ।
ବାରୁଣୀ ପର୍ବତ ଇତି ନାମ୍ନାଽସୌ କୀଦୃଶଃ ପୁନଃ ।୧ ।
ଦେବତା କାସ୍ତି 'ତତ୍ର ବୈ ମହିମା ବାପି କାଦୃଶଃ।
ଭୁବନେଶୋଽପି ଦେବର୍ଷେ ସ୍ୱର୍ଣ୍ଣକୂଟେ ଶ୍ରୁତଂ ମୟା ।୨ ।
ପ୍ରତ୍ୟକ୍ଷରସ୍ତୁତଃ ସ ଚ ନୀଳାଦ୍ରୌ ନୀଳମାଧବଃ ।
ନଶ୍ରୁତଂ କାରୁଣୀଶୈଳେ ପିତା ଯା ଦେବତା ମୟା ।
କଥ୍ୟତାମିତି ବୃତ୍ତାନ୍ତଂ ସଂଶୟୋ ଜାୟତେ ମମ ।୩।

**ମର୍ମାନୁବାଦ :** ଇନ୍ଦ୍ରଦ୍ୟୁମ୍ନ ପଚାରିଲେ- ହେ ମୁନିଶ୍ରେଷ୍ଠ! ବାରୁଣୀ ପର୍ବତର ନାମ କ'ଣ? ସେଠାରେ କ'ଣ ଦେଖିବାର ଅଛି ? ତା' ପାଖରେ କେଉଁ ଦେବତା ଅଛନ୍ତି ? ସ୍ୱର୍ଣ୍ଣକୂଟରେ ଭୁବନେଶ ଥିବା ଶୁଣିଲି । ନୀଳାଦ୍ରିରେ ନୀଳମାଧବ, କିନ୍ତୁ ବାରୁଣୀ ପର୍ବତରେ କେଉଁ ଦେବତା ରହିଲେ ଶୁଣିପାରିଲି ନାହିଁ । ଦୟାକରି ସେ ବିଷୟ ମୋତେ ଶୁଣାଇ ସଂଶୟ ଦୂର କରନ୍ତୁ ।

**ନାରଦ ଉବାଚ**

ଇନ୍ଦ୍ରଦ୍ୟୁମ୍ନ ନୃପଶ୍ରେଷ୍ଠ ଶୃଣୁ ତ୍ୱଂ କଥିତଂ ମମ।
ବ୍ରହ୍ମା ବିଷ୍ଣୁ ମହେଶାନାଂ ସ୍ଥାନାନ୍ୟତ୍ର ବସନ୍ତି ହି।୪।

ସାନନ୍ଦଂ ବିଷ୍ଣୁ ଶିବୟୋସ୍ତୟୋ ମାତ୍ତଃ ଶ୍ରୁତଂ ପୁରା ।
ନ ଶ୍ରୁତିଂ ବ୍ରହ୍ମଣଃ ସ୍ଥାନାଂ ତଦିଦାନାଂ ଶୃଣୁସ୍ୱ ଭୋଃ ।୫।
ବାରୁଣୀ ପର୍ବତୋ ଯସ୍ତୁ ବ୍ରାହ୍ମଣଃ ସ୍ଥାନମେବ ତତ୍
ନାମ୍ନୋଽପି କାରଣଂ ତସ୍ୟ କଥିତବ୍ୟଂ ତଦଗ୍ରତଃ ।୬।
ଶ୍ୱଣ୍ୱଷ୍ୱ ସ୍ଥିତି ବୃତ୍ତାନ୍ତ ସଂଶୟସ୍ତେ ଗମିଷ୍ୟତି ।୭।

**ମର୍ମାନୁବାଦ :** ନାରଦ କହିଲେ- ହେ ଇନ୍ଦ୍ରଦ୍ୟୁମ୍ନ, ସେ ବିଷୟ କହୁଛି ଶୁଣ। ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତିନି ଦେବତା ସେଠାରେ ଅବସ୍ଥାନ କରନ୍ତି। ପୁରାକାଳରେ ବିଷ୍ଣୁ ଓ ଶିବ ଥିଲେ। କିନ୍ତୁ ସେଠାରେ ବ୍ରହ୍ମା ଥିବାର ଶୁଣିନାହିଁ। ବାରୁଣୀ ପର୍ବତ ବ୍ରହ୍ମାଙ୍କର ସ୍ଥାନ ଅଟେ। ଆପଣ ଶୁଣିଲେ ସମସ୍ତ ସଂଶୟ ଦୂର ହେବ।

**ଇନ୍ଦ୍ରଦ୍ୟୁମ୍ନ ଉବାଚ**

କଥ୍ୟତାଂ ମୁନି ଶାର୍ଦ୍ଦୁଳ ଦୃଶ୍ୟତେ ନୀଳପର୍ବତେ ।
ମାଧବ! ସ୍ୱର୍ଣ୍ଣକୂଟେଽପି ଭୁବନେଶପ୍ତଥୈବ ଚ ।୮।
ବାରୁଣା ପର୍ବତେ କସ୍ମିନ ଦେଶେ ବ୍ରହ୍ମ ନ ଦୃଶ୍ୟତେ ।
କଥ୍ୟତାଂ ଚ ମାମାଗ୍ରେ ଭୋ ଯାତୁ ସଂଶୟ ଏବ ମେ ।୯।

**ମର୍ମାନୁବାଦ :** ଇନ୍ଦ୍ରଦ୍ୟୁମ୍ନ ପଚାରିଲେ- ମୁନିଶ୍ରେଷ୍ଠ । ନୀଳ ପର୍ବତରେ ମାଧବ ଓ ସ୍ୱର୍ଣ୍ଣକୂଟରେ ଭୁବନେଶ ଅବସ୍ଥାନ କରନ୍ତି । ବାରୁଣୀ ପର୍ବତରେ ତ ବ୍ରହ୍ମା ଦେଖାନାହାନ୍ତି । ଏ ସଂଶୟକୁ ମୋର ମୋଚନ କରନ୍ତୁ ।

**ନାରଦ ଉବାଚ**

ଇନ୍ଦ୍ରଦ୍ୟୁମ୍ନ ଶୃଣୁ ତ୍ୱଂ ଭୋ ବିଷ୍ଣୁଶ୍ଚ ଶିବ ଏ ତ ତୌ ।
ବ୍ରହ୍ମଦ୍ରାମର୍ତ୍ତ୍ୟୈଶ୍ଚ ପ୍ରାର୍ଥିତା ରକ୍ଷଣେ ନିଜେ ।।
କୃପୟା ପରୟା ତୈତୌ ରକ୍ଷଣେ ପାପନାଶନେ ।
ଅବତୀର୍ଣ୍ଣୌ ସିତୌ ଚାତ୍ର ସର୍ବଦା କ୍ଷିତିମଣ୍ଡଳ ।।
ବ୍ରହ୍ମେନ୍ଦ୍ରାଦ୍ୟାଃ ସୁରାଃ ସର୍ବେ ସିଦ୍ଧଚାରଣ ପନ୍ନଗାଃ ।
ଗନ୍ଧର୍ବାଃ କିନ୍ନରା ଯକ୍ଷା ରକ୍ଷୋ ଭୂତଗଣାସ୍ତଥା ।।
ସିଦ୍ଧା ବିଦ୍ୟାଧରା ଯେ ତେ ସର୍ବେ ନିବସନ୍ତି ଯଥାସୁଖମ୍ ।
ରକ୍ଷିତା ବିଷ୍ଣୁ ଶମ୍ଭୁଭ୍ୟାଂ କେବଳଂ ତୌ ମହେଶ୍ୱରୌ ।।
ଯୋଗେଶ୍ୱରୌ ସ୍ୱତନ୍ତ୍ରୌ ଚ ନିଜ ଲୀଳା ପରୌ ବିଭୂ ।
ସ୍ୱେଚ୍ଛୟା ଯତ୍ର କୃତ୍ରାପି ଚରଣେ ବଳବତ୍ତରୌ ।।

ତୟୋଃ କଃ ପ୍ରତିବଧ୍ନତୁଂ ଯଦିଷ୍ଟଂ ଚେଷ୍ଟିତଂ ତୁ ଯତ୍ ।
ସଙ୍ଗେନ ସଙ୍ଗଦୋଷାଽସ୍ତି ନ ବନ୍ଧୋ ବନ୍ଧନଭ୍ରମଃ ॥
ନ ଜୁଗୁପ୍‌ସା ମନୁଷ୍ୟେଷୁ ନ ପାପାତ୍ ଭୟମସ୍ତି ତୈ ।
ଏବଂ ବିଷ୍ଣୁଃ ଶିବୋ ଭୂତ୍ୱା ବ୍ରହ୍ମାଦ୍ୟା ନୈବ ତାଦୃଶାଃ ॥
ମନୁଷ୍ୟେଷୁ ଘୃଣାଂ ତେଷାଂ ସର୍ବେ ଦୁଷ୍କୃତ ଭାରୁଷୁ ।
ତେଷାଂ ବନ୍ଧନଭାତ୍ୟସ୍ତି ନ ଦୃଶ୍ୟତେ ତତୋ ନୀଚୈଃ ॥
ବ୍ରହ୍ମଦାନାଂ ଚ ଦେବାନାଂ ଯାନାନ୍ୟାତ୍ରୈବ ସନ୍ତି ବୈ
ତେଷୁ ତେ ସଂସ୍ଥିତଂ ନୈବ ଦୃଶ୍ୟନ୍ତେଽନ୍ତର୍ହିତାଃ ସୁଗାଃ ॥
ବ୍ରହ୍ମାପ୍ୟତ୍ର ସ୍ୱରୂପଣେ ବାରୁଣାଗିରି କନ୍ଦରେ ।
ବାରୁଣୀଶକ୍ତିରସ୍ତେବ ବରୁଣୋ ବ୍ରହ୍ମଣଃ ପ୍ରିୟଃ ॥
ଜନାନାମାଶ୍ୱରଃ ପାପ ତୀର୍ଥାନ୍ୟପି ଜଳାନି ବୈ ।
ପ୍ରସନ୍ନେ ବରୁଣେ ତାନି ଶୋଧକାନାହ କର୍ମଣାମ୍ ॥
ତା ନିବୃତ୍ତା ବଳାନ୍ୟେବ ଶରରୂପାଣି ରକ୍ଷାସମ୍ ।
ମନ୍ୟେଽହାନି ଘ୍ନତି ଶଯ୍ୟାଂ ନିତ୍ୟଂ ସୂର୍ଯ୍ୟସମଂ ତତଃ ॥
ତତୋଽପି ବରୁଣଃ ପୂଜ୍ୟୋ ବ୍ରାହ୍ମଣୈଃ ସର୍ବକର୍ମସୁ ।
ଜଳାଞ୍ଜଳି ଭିର୍ବିପ୍ରାଣୀଂ ନିବର୍ତ୍ତତେଽହନି ସ୍ତୁତୌ ॥
ବରୁଣସ୍ୟ ପ୍ରସାଦେନ ଜଗତ୍ୟସ୍ମିନ୍ ଶରାଇବ ।
ବରୁଣୋଽସ୍ତି ନିଜେ ସ୍ଥାନେ ଶକ୍ତିଂ ସଂରକ୍ଷ୍ୟ ତତ୍ରସ୍ଥ ॥
ବରୁଣାଖ୍ୟାନି ଯାନି ଚ ସିଦ୍ଧୟେ ସର୍ବକର୍ମଣାମ୍ ।
ବାରୁଣ୍ୟାଂ ପାଦୟୋଃ ଶକ୍ତେର୍ଜଳ ସ୍ରବତି ନିତ୍ୟଶଃ ॥
ତତୋ ଜଳମୟୀ ସାପି ଶୁଦ୍ଧଭୂତା ଜଳେଶ୍ୱରୀ ।
ତତ୍‌ପାଦାନ୍ନିସୃତଂ ବାରିକୁର୍ଡେ ତତ୍ ପାର୍ଶ୍ୱର ନୃପ॥
ନିପତ୍ୟ ନିମ୍ନେ କୁହରେ ପୃଥିବ୍ୟାମିହ ସର୍ବତଃ ।
ବାରୁଣୀ ସ୍ନାନ ସମୟେ ସନ୍ଧ୍ୟାକାଳେ ଦ୍ୱିଜନ୍ମନାମ ॥
ଶ୍ରାଦ୍ଧତର୍ପଣକର୍ମାଦିଷ୍ୱଧିକଂ ପାବନ ଜଳମ୍ ।
କୁର୍ବନ୍ତି ଯାନି ତୋଽୟେଽପି ତତ୍ ପାଦ ସଲିଳେ ଶୁଭେ ॥
ସ୍ନାନଂ କୃତ୍ୱା ଜନାଃ ସର୍ବେ ତୀର୍ଥେଷ୍ୱନ୍ୟେଷୁ ଯତ୍ ଫଳମ୍ ।
ତତ୍‌ଫଳଂ ଦୁର୍ଲଭଂ ପ୍ରାପ୍ୟ ସ୍ୱର୍ଗଂ ଗଚ୍ଛନ୍ତ୍ୟନାମୟମ୍ ॥
ତୟୋଃ ପୂଜା ତତଃ ଶ୍ରେଷ୍ଠା ବାରୁଣୀ କରୁଣାଦ୍ୱୟୋଃ ।
ଜଳଂ ସଂଶୋଧ୍ୟ ପାଦ୍ୟଂ ତତ୍ପୂରାଂ ସଂରକ୍ଷୟ ସ୍ୱୟମ୍ ॥
ନମୋ ବାରୁଣୀ ତୁଭ୍ୟଂ ତେ କୁଣ୍ଡେ ସ୍ନାମି ଶୁଚୌ ଜଳେ ।

ମମ ପାପାନି ନଷ୍ଟାନି ବ୍ରହ୍ମଲୋକାପ୍ତିରସ୍ତୁ ମେ ।।
ଇମଂ ମନ୍ତ୍ରଂ ସମୁଚ୍ଚାର୍ଯ୍ୟ ଯଃ ସ୍ନାତି ଚ ଦିନେ ଦିନେ ।
ସ ଯାତି ବ୍ରହ୍ମଣଃ ସ୍ଥାନଂ ଶାଶ୍ୱତଂ ଦୁର୍ଲ୍ଲଭଂ ପୁରମ୍ ।।
ତତୋ ବରୁଣସ୍ତସ୍ମିଂଶ୍ଚ ସ୍ଥାପିତୋ ବ୍ରହ୍ମଣା ପୁରା ।
ତେନାସ୍ତି ବାରୁଣୀ ଶକ୍ତିଃ ସ୍ଥାପିତା ବରୁଣେନ ସା ।।
ରକ୍ଷଣ୍ଣାୟ ଚ ଲୋକାନାଂ ଦୁର୍ଗା ଭଗବତୀ ସ୍ୱୟମ୍ ।
ବ୍ରହ୍ମା ବିଷ୍ଣୁ ମହେଶାଭ୍ୟାଂ ସହ ତତ୍ରାସ୍ତି ପର୍ବତେ ।।
ବୈଷ୍ଣବୀଂ ସୃଷ୍ଟିମାସ୍ରଷ୍ଟୁଂ ଶୈବାଶକ୍ତିସ୍ତଥୋକ୍ତଳେ ।
ତସ୍ମାଶ୍ଚ ବରୁଣାଗିରି ନାମ୍ନା ଲୋକେ ପ୍ରକାଶତେ ।।
ସୃଷ୍ଟିର୍ଯାସ୍ତି ଶ୍ରିୟସ୍ତା ବୈ ସଂପୂର୍ଣ୍ଣଂ ସନ୍ତି ଚୋତ୍କଳେ ।
ବିଷ୍ଣୁରୁଦ୍ର ଭବାନୀନାମୁତ୍ସବାଃ ସନ୍ତି ସର୍ବତଃ।।
ଉତ୍ସବାର୍ଥଂ ଚ ରାଜାପି ବ୍ରାହ୍ମଣାଶ୍ଚ ଭବନ୍ତ୍ୟପି ।
ତତୋଽତ୍ର ବ୍ରାହ୍ମଣଶଃ ପାର୍ଶ୍ୱେ ସ୍ଥାପ୍ୟା ରାଜାଦ୍ୱିଜାଦ୍ୟପି ।।
ତସ୍ମିନ୍ନିସରେ ବ୍ରହ୍ମା ସ୍ୱଶୈଳସ୍ୟ ନୃପାଳୟମ୍ ।
ପୂର୍ବ କଳ୍ପିତବାନ ତତ୍ର ସ୍ଥାପିତାନନ୍ତଶକ୍ତୟଃ ।।
ତାଃ ସର୍ବା ବାରୁଣୀଶୈଳେ ସୁଗୁପ୍ତା ନିବସନ୍ତ୍ୟପି ।
ଐନ୍ଦ୍ରାଗ୍ନାୟା ତଥା ଯାମ୍ୟା ନୈର୍ଋତା ବାରୁଣୀ ଚ ସା ।।

**ମର୍ମାନୁବାଦ :** ଏଠାରେ ବିଷ୍ଣୁ ଓ ଶିବ ଏକ ଅଟନ୍ତି। ବ୍ରହ୍ମା ମର୍ତ୍ତ୍ୟରେ ନିଜେ ରହିଛନ୍ତି । କାରଣ ହରିହରଙ୍କ କୃପା ଦ୍ୱାରା ସମସ୍ତ ପାପରୂପକ କଳ୍ମଷ ନାଶ ହେବ । ତେଣୁ ସେ ଏଠାରେ ଆବିର୍ଭୂତ ହୋଇଛନ୍ତି। ତା'ପରେ ବ୍ରହ୍ମାଦି ଦେବତାମାନେ ସିଦ୍ଧ, ଚାରଣ, ଗନ୍ଧର୍ବ, କିନ୍ନର ଯକ୍ଷଗଣ, ଭୂତଗଣ, ବିଦ୍ୟାଧରାଦି ସମସ୍ତେ ଏଠାରେ ତାଙ୍କର ଦର୍ଶନାର୍ଥେ ଆସି ଶିବ ରୂପରେ ନିଜ ନିଜ ସ୍ଥାନମାନ ଆବିଷ୍କାର କରି ଆନନ୍ଦରେ ବସିଛନ୍ତି। କେବଳ ହରି ଏବଂ ହର ଏକ ଶିମ୍ଭୁ ରୂପରେ ବିରାଜମାନ କରି ଲୀଳା ବିସ୍ତାର କରିଅଛନ୍ତି । ଭକ୍ତମାନେ ଯେଉଁ ଚରଣରେ ମନକୁ ନିବେଶ କରନ୍ତି ସେହି ହରିହର ଅଶେଷ ବରକୁ ପ୍ରଦାନ କରନ୍ତି। ଏଠାରେ ହରିହରଙ୍କ ପ୍ରିୟ ବ୍ରହ୍ମା ବାରୁଣୀଗିରି ରୂପରେ ଅବତୀର୍ଣ୍ଣ । ଜନମାନସରେ ପାପ ନାଶନ ନିମିତ୍ତ ନାନାତୀର୍ଥ ଜଳ ମଧ୍ୟ ରହିଛି । ବିପ୍ରମାନେ ସୂର୍ଯ୍ୟଙ୍କୁ ଏହି ତୀର୍ଥ ଜଳରେ ଜଳ ଅଞ୍ଜଳି ପ୍ରଦାନ କରନ୍ତି । ବରୁଣଙ୍କ ପ୍ରସାଦ ଦ୍ୱାରା ସଂସାର ସୁରକ୍ଷିତ ହୁଏ । ବରୁଣଙ୍କର ଏହା ନିଜ ସ୍ଥାନ ଅଟେ । ଏଠାରେ କର୍ମ କଲେ ସିଦ୍ଧଲାଭ ହୁଏ ।

## ଅଧ୍ୟାୟ # ୪

# ପୁରାଣ, କିମ୍ବଦନ୍ତୀ, ପ୍ରତ୍ନତତ୍ତ୍ୱରେ ବରୁଣେଇ

ବିଶ୍ୱରୂପା ପରମା ପ୍ରକୃତିର କୁହୁକ ସାମ୍ରାଜ୍ୟ ହେଲା ପୁଣ୍ୟଭୂମି ଭାରତବର୍ଷ । ଏଇ ଦେଶର ଆକାଶରେ ସୂର୍ଯ୍ୟ କପିଳବର୍ଣ୍ଣ ଧାରଣ କରେ ବସନ୍ତ ଋତୁରେ, ସୁବର୍ଣ୍ଣ ବର୍ଣ୍ଣ ଧାରଣ କରେ ଗ୍ରୀଷ୍ମଋତୁରେ, ଶ୍ୱେତବର୍ଣ୍ଣ ଧାରଣ କରେ ବର୍ଷାଋତୁରେ, ପାଣ୍ଡୁର ବର୍ଣ୍ଣ ଧାରଣ କରେ ଶରତ ଋତୁରେ ଓ ଲୋହିତ ବର୍ଣ୍ଣ ଧାରଣ କରେ ଶିଶିର ଋତୁରେ ।

"ବସନ୍ତେ କପିଳଃ ସୂର୍ଯ୍ୟଃ ଗ୍ରୀଷ୍ମେ କାଞ୍ଚନ ସନ୍ନିଭଃ
ଶ୍ୱେତବର୍ଷା ସୁବର୍ଣ୍ଣେନ ପାଣ୍ଡୁ ଶରଦ ଭାସ୍କରଃ ।
ହେମନ୍ତେ ତାମ୍ରବର୍ଣ୍ଣାଭ୍ୟଃ ଶିଶିରେ ଲୋହିତ ରବିଃ
ଇତିବର୍ଣ୍ଣାଃ ସମାଖ୍ୟାତ ସୂର୍ଯ୍ୟସ୍ୟ ଋତୁ ସମ୍ଭବାଃ ।' (ବ୍ରହ୍ମପୁରାଣ-୨, ୧୨-୧୩)

ଏହି ରୂପେ ପ୍ରକୃତିର ନୈସର୍ଗିକ ସୁଷମାକୁ କବିମାନେ ବୈଦିକ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ରସମୟ କାବ୍ୟ ସୃଷ୍ଟି କରିଅଛନ୍ତି। ପ୍ରାକୃତିକ ସୁଷମାରେ ବିମଣ୍ଡିତ ବରୁଣେଇ ପର୍ବତ ଯୁଗ ଯୁଗ ଧରି ତା'ର ଲୀଳାଖେଳାକୁ ସ୍ଥାନିତ କରିପାରିଛି । କପିଳ ସଂହିତା ଅନୁସାରେ ବରୁଣେଇ ପର୍ବତ ସତ୍ୟ ଯୁଗରୁ ବ୍ରହ୍ମାଙ୍କ ନିଜ ନିବାସ ରୂପେ ରହିଆସିଛି । ତ୍ରେତୟା ଯୁଗରେ ପ୍ରଭୁ ଶ୍ରୀରାମଚନ୍ଦ୍ର, ଭ୍ରାତା ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କ ସହିତ ଏଠାକୁ ଆସିଥିଲେ । ଅଜ୍ଞାତ ବନବାସ ସମୟରେ କେତେକ ଦିନ ଏଠାରେ ଅତିବାହିତ କରିଥିଲେ । ଦ୍ୱାପର ଯୁଗରେ ପଞ୍ଚୁପାଣ୍ଡବ ଗୁମ୍ଫା ଓ ପାହାଡ଼ର ନାମ ପାଣ୍ଡବହରା ପାହାଡ଼ । ଯୁଗ ଯୁଗ ଧରି ବରୁଣେଇ ପୁରାଣ, କିଂବଦନ୍ତୀର ଚର୍ଚ୍ଚାରେ ରହିଆସିଛି । ବରୁଣେଇକୁ ମର୍ଯ୍ୟାଦାପୁରୁଷ ଶ୍ରୀରାମଚନ୍ଦ୍ର ଆସିଥିବାରୁ ସେତେବେଳେ କେଉଁ କେଉଁ ରାଜ୍ୟ କିଭଳି ସ୍ଥିତିରେ ଥିଲେ ସେ ପ୍ରସଙ୍ଗ ଆଲୋଚନା କରିବା । ପ୍ରଭୁ ରାମଚନ୍ଦ୍ରଙ୍କ ପିତା ଦଶରଥଙ୍କ ଅଧୀନରେ ଥିବା ରାଜ୍ୟଗୁଡ଼ିକ ହେଲା- ଦ୍ରାବିଡ଼, ସିନ୍ଧୁ, ସୌବିର, ସୌରାଷ୍ଟ୍ର, ଅଙ୍ଗ, ବଙ୍ଗ, ମଗଧ, ମତ୍ସ୍ୟ, କାଶୀ, କୋଶଳ ସହିତ ଦକ୍ଷିଣ ଭାରତ ।

"ଦ୍ରାବିଡାଃ ସିନ୍ଧୁ ସୌବିରାଃ
ସୌରାଷ୍ଟ୍ର ଦକ୍ଷିଣା ପଥାଃ
ବଙ୍ଗାଙ୍ଗ ମଗଧା ମତ୍ସ୍ୟାଃ
ସମୃଦ୍ଧିଃ କାଶୀ କୋଶଳ । ରାମାୟଣ- ୨/୧୦/୩୩

"ଆମ ଓଡ଼ିଶା ଭୂଭାଗ ସେତେବେଳେ କଳିଙ୍ଗ, ଉତ୍କଳ ନାମରେ ପରିଚିତ ଥିଲା ଓ ଓଡ଼ିଶାର ପଶ୍ଚିମାଂଚଳ ଦକ୍ଷିଣ କୋଶଳ ରାଜ୍ୟ ଥିଲା । ପରବର୍ତ୍ତୀ ସମୟରେ ଉଡ୍ର, କଙ୍ଗୋଦ ଆଦି ରାଜ୍ୟର ସୃଷ୍ଟି ହୋଇଥିଲା । ପ୍ରାଚୀନ ଭାରତରେ ରାମାୟଣ ବର୍ଣ୍ଣିତ ରାଜ୍ୟ ହେଲା- ଅଙ୍ଗଦେଶ, ଅଙ୍ଗନୀୟା, ଆନ୍ଧ୍ର, ଅଯୋଧ୍ୟା, ଅବନ୍ତି, ଅବ୍ରବନ୍ତି, ଇନ୍ଦ୍ରଶିରି, ଉତ୍କଳ, ଉଶୀରବୀଜ, କଳିଙ୍ଗ, କାମ୍ପିଲ୍ୟ, କାମ୍ବୋଜ, କାଶୀ, କାରୁପଥ, କିଷ୍କିନ୍ଧା, କୁରୁ କୋଶଳ, କୋଶାମ୍ବି ଗୟା, ଗାନ୍ଧାର ଗିରିବ୍ରଜ । ରାମାୟଣ ପରେ ମହାଭାରତ ବେଳକୁ ଅନେକ ନୂତନ ରାଜ୍ୟ ଆସିଛି । ଭାରତବର୍ଷରେ ଥିବା ସମସ୍ତ ରାଜ୍ୟ ତଥା ସମଗ୍ର ଭାରତବର୍ଷରେ ସାତଟି ପର୍ବତକୁ କୁଳ ପର୍ବତ କୁହାଯାଇଛି । ମହେନ୍ଦ୍ର ପର୍ବତ ହେଲା ସାତକୁଳ ପର୍ବତ ମଧ୍ୟରେ ଶ୍ରେଷ୍ଠ । ଏହା ଗଜପତି ଜିଲ୍ଲାରେ ଅବସ୍ଥିତ । ରାମାୟଣ ଯୁଗରେ ହନୁମାନ ଏହି ପର୍ବତରୁ ଡେଇଁ ଲଙ୍କାକୁ ଯାଇଥିଲେ । ମହାଭାରତ ଅନୁସାରେ ପଞ୍ଚପାଣ୍ଡବ ଏହି ପର୍ବତରେ ରାତ୍ରିଯାପନ କରିଥିଲେ । ହନୁମାନ ମହେନ୍ଦ୍ର ପର୍ବତକୁ ଆରୋହଣ କରିବା ସମୟରେ ରାମାୟଣରେ ବର୍ଣ୍ଣନା ହେଲା, "ତେତସ୍ତୁ ମାରୁତ ପ୍ରଖ୍ୟାଃ ସହରିମରୁତାତ୍ମଜଃ, ଆରୁରୋହନଗଶ୍ରେଷ୍ଠଂ ମହେନ୍ଦ୍ର ମରିମର୍ଦ୍ଦନଃ ।" କୁଳ ପର୍ବତ ବର୍ଣ୍ଣନାରେ ଭାରତର ପ୍ରତ୍ୟେକ କବି ମହେନ୍ଦ୍ର ପର୍ବତର ନାମ ପ୍ରଥମେ ବର୍ଣ୍ଣନା କରିଛନ୍ତି । ମହେନ୍ଦ୍ରୋମଳଃ ସହ୍ୟ ଶୁକ୍ତିମାନ ରକ୍ଷ ପର୍ବତଃ । ବିନ୍ଧ୍ୟଶ୍ଚ ପାରିଜାତଶ୍ଚ କୁଳପର୍ବତାଃ (ବିଷ୍ଣୁ ପୁରାଣ) । ଭାରତ ସାତଟି କୁଳପର୍ବତ ହେଲା- ହିମାଳୟ, ବିନ୍ଧ୍ୟାଚଳ, ମଳୟ ପର୍ବତ, ଋକ୍ଷ ପର୍ବତ, ଶୁକ୍ତିମାନ, ପାରିଜାତ ଓ ମହେନ୍ଦ୍ରଗିରି । ଆମ ଓଡ଼ିଶାରେ ପାରିଜାତ ପର୍ବତମାଳାରୁ ବାହାରିଥିବା ନଦୀଗୁଡ଼ିକ ହେଲେ ମହାନଦୀ ଓ ବ୍ରାହ୍ମଣୀ ।" (୧)

ପୁରାଣ ପ୍ରସିଦ୍ଧ ମହେନ୍ଦ୍ରଗିରି ପର୍ବତରୁ ଯେଭଳି ମହାବୀର ହନୁମାନ ଲଙ୍କା ଯାଇଥିଲେ ଏବଂ ଦ୍ୱାପର ମହାଭାରତ ଯୁଗରେ ପଞ୍ଚପାଣ୍ଡବ ମହେନ୍ଦ୍ରଗିରିରେ ଅଜ୍ଞାତବାସ ସମୟରେ ରହିଥିଲେ ଠିକ୍ ସେଭଳି ବରୁଣେଇ ପର୍ବତରେ ପ୍ରଭୁ ଶ୍ରୀରାମ, ଭାଇ ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କ ସହ ଏଠାରେ ରହିଥିଲେ ଏବଂ ପରବର୍ତ୍ତୀ ସମୟରେ ପଞ୍ଚପାଣ୍ଡବ ମଧ୍ୟ ଏଠାକୁ ଆସିଥିଲେ । ବରୁଣେଇ ପର୍ବତ ଉଭୟ ତ୍ରେତୟା ଯୁଗ ଓ ଦ୍ୱାପର ଯୁଗର ସ୍ମୃତି ବହନ କରୁଥିବାରୁ ଏହା ଉତ୍କଳ ଭୂଖଣ୍ଡରେ 'ପୁରାଣ ପ୍ରସିଦ୍ଧ ପର୍ବତ' ଭାବେ ଖ୍ୟାତ ଅର୍ଜନ କରିଛି । କଷ୍ଟସାଧ ପରିଶ୍ରମ କରି ଯେଉଁମାନେ ପାଣ୍ଡହରା ପାହାଡ଼ର ଶିଖର ଦେଶକୁ ଯାଇ ଶ୍ରୀରାମ ପଥର, ସୀତାକୁଣ୍ଡ ଓ ପାଣ୍ଡବ ଗୁମ୍ଫା ଦେଖନ୍ତି ସେମାନେ ନିଜକୁ ଗର୍ବିତ ମନେକରନ୍ତି ଓ ଶତଜନ୍ମର ପୁଣ୍ୟଫଳ ପାଇଛନ୍ତି ବୋଲି ଅନୁଭବ କରନ୍ତି । ପ୍ରଫେସର ଶରଚ୍ଚନ୍ଦ୍ର ମହାପାତ୍ର ଏ ନେଇ ଲେଖିଛନ୍ତି :

"କିଛି ଦୂରେ ଖୋର୍ଦ୍ଧାଠାରେ ବରୁଣେଇ ଗିରି
ଗୌରବମୟ ଅଟଇ ଅତୀତ ଏହାରି ।
ତ୍ରେତୟା ଯୁଗରେ ପତ୍ନୀ ଭ୍ରାତା ସହିତରେ
ଶ୍ରୀରାମ ରହିଲେ ଏଠି ବନବାସ କାଳେ ।
ଜନ ମାନସରେ ରହିଅଛି ଏ ବିଶ୍ୱାସ
ଏହାରି ଗିରି କନ୍ଦରେ କରିଥିଲେ ବାସ ।
ସ୍ମାରକୀ ରୂପେ ରହିଛି ଶ୍ରୀରାମ ପ୍ରସ୍ତର
ଜାନକୀ କୁଣ୍ଡ ଶୋଭଇ ଏହା ସମୀପର ।
ଭକ୍ତଜନ ହୃଦହାରି ଏ ପାବନ ଭୂଇଁ
ରାଘବ ପଦ ପରଶେ ପବିତ୍ର ଅଟଇ ।
ତାହାଙ୍କ ଚରଣେ ସଦା ରଖିଥାଅ ମତି
ହଟିବ ବାଧା ବିପଦ ଲଭିବ ମୁକତି ।
ଧନ୍ୟ ବରୁଣେଇ ଗିରି ଧନ୍ୟ ତୋ ଅତୀତ
ବର୍ଣ୍ଣନା କରିବା ପାଇଁ ନୁହେଁ ମୁଁ ସମର୍ଥ ।
ଭାବାବିଷ୍ଟ ହୁଏ ମୁହିଁ ଶୁଣିଲେ ତୋ କଥା
ତୋ ଚରଣେ ଭକ୍ତିଭରେ ନୁଆଁଏ ମୋ ମଥା ।" (୨)

ମର୍ଯ୍ୟାଦାପୁରୁଷ ଶ୍ରୀରାମଚନ୍ଦ୍ର ବରୁଣାଇ ପର୍ବତର ପାଣ୍ଡହରା ପାହାଡ଼ ଉପରକୁ ଆସିଥିବା ପୂର୍ବରୁ ଆଲୋଚନା କରିଛେ । ସେଠାରେ ଥିବା 'ଶ୍ରୀରାମ ପଥର' ଓ 'ସୀତାକୁଣ୍ଡ ସ୍ମାରକୀ' ଭାବେ ରହିଛି । ପାହାଡ଼ ଶିଖରରେ ଥିବା ସୀତାକୁଣ୍ଡରେ ବର୍ଷସାରା ଜଳ ପୂର୍ଣ୍ଣଭାବରେ ଥାଏ । ତାହାହିଁ ସୀତାକୁଣ୍ଡର ବିଶେଷତ୍ୱ । ଏ ପ୍ରସଙ୍ଗରେ ପ୍ରଭୁ ଶ୍ରୀରାମଚନ୍ଦ୍ର କେବେ ଏଠାକୁ ଆସିଥିଲେ ତାହା ଅବତାରଣା କରିବା ଉଚିତ ହେବ । ଓଡ଼ିଶା ସଂସ୍କୃତ ଏକାଡେମୀର ନଭେମ୍ବର ୨୦୧୮ ମାସିକ ମୁଖପତ୍ର 'ସ୍ତଗଧାରା' ସୌଜନ୍ୟରୁ ଅବସରପ୍ରାପ୍ତ ପୋଲିସ ଆଇଜି ତଥା ବିଶିଷ୍ଟ ସାହିତ୍ୟ ଗବେଷକ ସାରଙ୍ଗଧର ରାୟଗୁରୁ ରାମାୟଣର ବିଭିନ୍ନ ଘଟଣାବଳୀର ସମୟ ତାରିଖ ମସିହା ସହ ଅବତାରଣା କରିଛନ୍ତି ଯାହା ପ୍ରଣିଧାନଯୋଗ୍ୟ । ସେ ବାଲ୍ମୀକି ରାମାୟଣ ଅନୁସାରେ ମୁଖ୍ୟ ଘଟଣାଗୁଡ଼ିକ ସାରାଂଶ ନିମ୍ନମତେ ପ୍ରଦାନ କରୁଛନ୍ତି ଓ ସେଥିରୁ ପ୍ରଭୁ ଶ୍ରୀରାମଚନ୍ଦ୍ରେ ସୀତା, ଲକ୍ଷ୍ମଣଙ୍କ ସହ କେବେ ବରୁଣେଇ ଆସିଥିଲେ ତାହା ଜାଣିହେବ ।

ଘଟଣାବଳି ହେଲା-

୧. ଶ୍ରୀରାମଙ୍କ ଜନ୍ମ- ଖ୍ରୀ.ପୂର୍ବ ତା ୧୧.୨.୪୪୩୩ ଜନ୍ମ କର୍କଟ ଲଗ୍ନ (ଏହି ଦିନ ତିନିଗୋଟି ନକ୍ଷତ୍ର ଭୋଗ ହୋଇଥିଲା। ସେଦିନ ଚନ୍ଦ୍ରମାନ ବର୍ଷ ଓ ସୌରମାନ ବର୍ଷ ଏକାଦିନରେ ପଡ଼ିଥିଲା) ।

୨. ବିଶ୍ୱାମିତ୍ରଙ୍କ ସହ ଶ୍ରୀରାମଙ୍କ ବନଗମନ- ଖ୍ରୀ.ପୂ. ତା.୬.୨.୪୪୨୧

୩. ଶ୍ରୀରାମ ବିବାହ ଖ୍ରୀ.ପୂ. ୪.୩.୪୪୨୧

୪. ଶ୍ରୀରାମ ବିବାହ ପରେ ଅଯୋଧ୍ୟା ରହଣି- ଖ୍ରୀ.ପୂ. ୫.୩.୪୪୨୧ରୁ ୧୬.୨.୪୪୦୯

୫. ଶ୍ରୀରାମଙ୍କ ଅପ୍ରତ୍ୟାଶିତ ବନଗମନ- ଖ୍ରୀ.ପୂ. ୧୬.୨.୪୪୦୧

୬. ଶ୍ରୀରାମଙ୍କ ଚିତ୍ରକୂଟରେ ବାସ- ଖ୍ରୀ.ପୂ. ୨୨.୨.୪୪୦୯

୭. ଶ୍ରୀରାମଙ୍କ ବିଭିନ୍ନ ଋଷି ଆଶ୍ରମରେ ଋଷିମାନଙ୍କ ସହ ପାଳିକରି ରହଣି ଖ୍ରୀ.ପୂ. ୨୨.୩.୪୪୦୯ ତାରିଖରୁ ୨୩.୩.୪୩୯୯

୮ ଶ୍ରୀରାମଙ୍କ ପଞ୍ଚବଟୀ ନିବାସ- ଖ୍ରୀ.ପୂ. ୨୬.୩.୪୩୯୯ରୁ ତା ୨୦.୨.୪୩୯୬

୯. ସୀତା ହରଣ ଦିବସ- ଖ୍ରୀ.ପୂ. ୨୦.୨.୪୩୯୬
(ଅଶୋକ ବନରେ ସୀତା ହନୁମାନଙ୍କୁ ଯେଉଁଦିନ କହିଥିଲେ- ସେଦିନଟି ଥିଲା ୨୦.୧୨.୪୩୯୬ ଖ୍ରୀ.ପୂ. । ତାହାର ଦଶମାସ ପୂର୍ବରୁ ରାବଣ ସୀତାଙ୍କୁ ଅପହରଣ କରିଥିଲା । ଏହା ମଧ୍ୟ ପ୍ରମାଣିତ ଯେ ସୀତା ହରଣ ଦିନ ଥିଲା ୨୦.୨.୪୩୯୬ ଖ୍ରୀ.ପୂ. । ଏହି ଦିନ ମଧ୍ୟ ଶ୍ରୀ ରାମଚନ୍ଦ୍ରଙ୍କର ୩୮ତମ ଜନ୍ମଦିବସ ଥିଲା । ତା'ର ତିନି ସପ୍ତାହ ପୂର୍ବରୁ ଅର୍ଥାତ୍ ତା ୩୧.୧. ୪୩୯୬ ଖ୍ରୀ.ପୂ.ରେ ସୂର୍ପଣଖା ରାମଚନ୍ଦ୍ରଙ୍କୁ ଆଶ୍ରମରେ ସାକ୍ଷାତ୍ କରିଥିଲା ।)

୧୦. ରାବଣର ସୀତାହରଣ ଠାରୁ ସୁଗ୍ରୀବଙ୍କର ବାନରଦୂତ ପ୍ରେରଣ ଖ୍ରୀ.ପୂ. ତା ୧୨.୧୧.୪୩୯୬

୧୧. ହନୁମାନଙ୍କର ଲଙ୍କା ଗମନ ଓ ପ୍ରତ୍ୟାଗମନ- ଖ୍ରୀ.ପୂ. ତା ୨୨.୧୨.୪୩୯୬

୧୨. ଶ୍ରୀରାମଙ୍କର ଲଙ୍କା ପ୍ରତି ବାନର ସହ ଯୁଦ୍ଧାଭିଯାନ- ଖ୍ରୀ.ପୂ. ତା. ୨୩.୧୨.୪୩୯୬

୧୩. ଶ୍ରୀରାମଚନ୍ଦ୍ରଙ୍କର ସମୁଦ୍ର କୂଳରେ ପ୍ରବେଶ ସମୟ- ଖ୍ରୀ.ପୂ. ତା୨୩.୧୨.୪୩୯୬ରୁ ୯.୧.୪୩୯୫

୧୪. ରାମସେତୁ ନିର୍ମାଣ- ଖ୍ରୀ.ପୂ. ତା୧୩.୧.୪୩୯୫ରୁ ୫.୨.୪୩୯୫

୧୫. ରାମ-ରାବଣ ଯୁଦ୍ଧ- ଖ୍ରୀ.ପୂ. ତା ୧୯.୧.୪୩୯୫

୧୬. ବିଭୀଷଣର ପଟ୍ଟାଭିଷେକ- ଖ୍ରୀ.ପୂ. ତା ୬.୨.୪୩୯୫

୧୭. ଶ୍ରୀରାମଙ୍କର ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ ଓ ପଟ୍ଟାଭିଷେକ ଖ୍ରୀ.ପୂ. ତା ୮.୨.୪୩୯୫ ।"(୩)

ବାଲ୍ମୀକି ରାମାୟଣକୁ ଆଧାର କରି ପ୍ରସ୍ତୁତ ହୋଇଥିବା ଉପରୋକ୍ତ ଘଟଣାବଳିର ସମୟକୁ ବିଚାରକୁ ନେଲେ ଶ୍ରୀରାମଙ୍କ ବିଭିନ୍ନ ଋଷି ଆଶ୍ରମରେ ବିଭିନ୍ନ ସମୟରେ ରହଣି ସମୟ ଥିଲା ଖ୍ରୀ.ପୂ. ୨୨.୩.୪୪୦୯ ରୁ ୨୩.୩.୪୩୯୯ ଯାହାର ଅବଧି ଥିଲା ଦଶବର୍ଷ। ଏହି ଦଶବର୍ଷ ମଧ୍ୟରେ ଖୋର୍ଦ୍ଧା ବରୁଣେଇକୁ କିଛିଦିନ ପାଇଁ ଆସିଥିବା ମନେହୁଏ । ହୁଏତ ସେଠାରେ କୌଣସି ଋଷି ଅବସ୍ଥାନ କରୁଥିବେ। ଏଠାରେ ଶ୍ରୀରାମଚନ୍ଦ୍ରଙ୍କ ନାମରେ ଶ୍ରୀରାମ ପଥର ଓ ସୀତା ଯେଉଁ କୁଣ୍ଡ ସ୍ଥାପନ କରିଥିଲେ ତାହା ସୀତାକୁଣ୍ଡ ନାମରେ ପରିଚିତ। ଏହି କୁଣ୍ଡରୁ ପାଣି କେବେ ଶୁଖେନାହିଁ ବୋଲି ଜନଶ୍ରୁତି ଅଛି।

ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ସମୟ ସାରଣୀକୁ ନେଇ କେହି କେହି ପ୍ରଶ୍ନ କରିପାରନ୍ତି । ବିଭିନ୍ନ ରାମାୟଣ ଆଲୋଚନାରେ ରୁଚି ରଖିଥିବା ଗବେଷକ ତଥା ବାଙ୍କୋଇ କାଳିଚରଣ ପାଞ୍ଚଗଡ଼ ଅନଙ୍ଗ ନରେନ୍ଦ୍ର ମହାବିଦ୍ୟାଳୟର ଓଡ଼ିଆ ବିଭାଗ ପ୍ରାଧ୍ୟାପକ ରଙ୍କନିଧି ବଳିଆରସିଂହ ଏବଂ ଖୋର୍ଦ୍ଧା ଶ୍ରୀଜଗନ୍ନାଥ ସାହିତ୍ୟ ପରିଷଦର ସଭାପତି ଶିବସୁନ୍ଦର ପଟ୍ଟନାୟକ ବାଲ୍ମୀକି ଋଷିଙ୍କ ସଂସ୍କୃତ ରାମାୟଣର ତଥ୍ୟ ଗ୍ରହଣଯୋଗ୍ୟ ବୋଲି ମତ ଦେଇଛନ୍ତି । ବରୁଣେଇକୁ ଆସିବା ସମୟରେ ପ୍ରଭୁ ରାମଚନ୍ଦ୍ର ନିରାକାରପୁର ନିକଟ ରାମେଶ୍ୱରଠାରେ ଚିତ୍ରକୂଟ ପାହାଡ଼ରେ ଥିବା କଥା ମଧ୍ୟ ପ୍ରକାଶ କରିଛନ୍ତି ।

ଏ ପ୍ରସଙ୍ଗରେ History and spiritually blend at Baruneiରେ ଥିବା ଲେଖାକୁ ମଧ୍ୟ ଉଲ୍ଲେଖ କରିବା । ସେଥିରେ ଲେଖା ଅଛି- "God Ramachandra lived here for some days at the time of his unknown living (angyatbas). The stone on which God Ramachandra lived is known as Shree Ram Stone (Shree Ram Pathar). One day Goddess Sita washing the pots had told, till the earth is there, the water of the place will not dry." (୪) ଏହି ପ୍ରସଙ୍ଗ ମଧ୍ୟ Highlights of Khurda and Historic Baruneiରେ ନିମ୍ନମତେ ସ୍ଥାନ ପାଇଛି- "It is believed That Sita and Rama lived here in exile period. Water available at Sitakund through out the year. The pond and cave are associated with the paranoic episodes that have great appeal to visitors" (୫)

ପାଣ୍ଡହରା ପାହାଡ଼ରେ ଶ୍ରୀରାମ ପଥର, ସୀତା କୁଣ୍ଡ ତ୍ରେତୟା ଯୁଗର ଘଟଣାକୁ ମନେ ପକାଇଦିଏ । ଏଠାରେ ମଧ୍ୟ ରହିଛି ପାଣ୍ଡହରା ଗୁମ୍ଫା ବା ପାଣ୍ଡବହରା ଗୁମ୍ଫା । ପାଣ୍ଡବମାନେ ପଶାଖେଳରେ ହାରି ଅଜ୍ଞାତ ବନବାସ କାଳରେ ଏଠାରେ ଥିବାରୁ ଏହାର ନାମ କେଉଁଠି ପାଣ୍ଡବ ଗୁମ୍ଫା ହୋଇଛି। ଏଠାରେ ଶହେ ଜଣ ଲୋକ ସୁରୁଖୁରୁରେ ବସିପାରିବେ । ଏହି

ସ୍ଥାନରୁ ଶହେ ଫୁଟ୍ ଦୂରରେ ପୂର୍ବ ଦିଗରେ ସାମାନ୍ୟ ଉଚ୍ଚରେ ଅଛି 'ବାଘ ଗୁମ୍ଫା'। ବାଘମାନଙ୍କର ଏହା ରହଣିସ୍ଥଳ ଥିଲା । ବଣଭୋଜି ସମୟରେ ଏ ସ୍ଥାନର ମଜା ନିଆରା । ଗୁମ୍ଫା ଭିତରେ ବସିହେବ, ଶୋଇହେବ । ପାଇକମାନେ ବିଶେଷତଃ ପାଇକ ବିଦ୍ରୋହ ସମୟରେ ବକ୍ସି ଜଗବନ୍ଧୁଙ୍କର ଏଠାରେ ମନ୍ତ୍ରଣା ହେଉଥିଲା । ପୂର୍ବେ ବହୁ ମୁନି ଋଷିମାନେ ଏଠାରେ ବାସ କରିଥିବାରୁ ଏ ସ୍ଥାନର ପବିତ୍ରତା ଥିଲା। ସେଥିପାଇଁ ପାଇକନେତାମାନେ ବଦ୍ଧମୂଳ ଧାରଣା ଥିଲା ଯେ, ଏ ସ୍ଥାନର ପବିତ୍ରତା ଯୋଗୁଁ ସେମାନେ ଜୟଯୁକ୍ତ ହେବେ । ଶୁଣାଯାଏ ପାଣ୍ଡବ ଗୁମ୍ଫାରେ ରହୁଥିବା ସନ୍ନ୍ୟାସୀମାନେ ନିକଟରେ ଥିବା ବାଘଗୁମ୍ଫାର ବାଘମାନେ ସେମାନଙ୍କର କିଛି କ୍ଷତି କରୁନଥିଲେ, ବରଂ ବାଘମାନେ ଋଷିମାନଙ୍କର ବଶ୍ୟତା ସ୍ୱୀକାର କରିଥିଲେ । ଏଭଳି ଶୁଣିବାକୁ ମିଳେ ବୋଲଗଡ଼ ବ୍ଲକ୍ ଝିକିମିକି ପାହାଡ଼ଠାରେ । ପାହାଡ଼ ଉପରେ ସମତଳ ସ୍ଥାନରେ ଦୁଇ ଏକର ପରିମିତର ଏକ କଇଁଫୁଲର ପୋଖରୀ ଓ ତିନି ଏକର ଧାନ ଚାଷ ଜମି ରହିଛି । ସେଠାରେ ଦେଢ଼ଶହ ବର୍ଷ ପୂର୍ବେ ବାଘାମ୍ବରୀ ବାବା ଥିଲେ ଯିଏ ଅନେକ ବାଘଙ୍କୁ ପୋଷା ମନେଇଥିଲେ । ବୋଲଗଡ଼ ମର୍ଦ୍ଦାବାଡ଼ିର ଲେଖକ ବାଲ୍ମୀକ ବଳିଆରସିଂହ ତାଙ୍କର ବୋଲଗଡ଼ ପର୍ଯ୍ୟଟନ ବହିରେ ଏହା ସୁନ୍ଦର ଭାବେ ଉଲ୍ଲେଖ କରିଛନ୍ତି । ବରୁଣେଇର ପାଣ୍ଡବ ଗୁମ୍ଫାରେ ମୁନିଋଷିମାନେ ବଣ୍ୟପଶୁମାନଙ୍କ ମେଳରେ ଦିନ କାଟିଥିବେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

କବୟିତ୍ରୀ ବିଳାସିନୀ ଦାଶ ପାଣ୍ଡବ ଗୁମ୍ଫା ନେଇ ଲେଖିଛନ୍ତି-

"ଇତିହାସ ଯା'ର ସ୍ୱର୍ଣ୍ଣାକ୍ଷରେ ଲେଖା
ପୁରାଣେ ରହିଛି ଗାଥା
ଖୋରଧା ଶୀରି ସେ ବରୁଣେଇ ଗିରି
ଗରବେ ଟେକିଛି ମଥା ।
ସବୁଜ ବନାନୀ ନାନା ଫୁଲ ଫୁଲେ ବାସେ
ସୁରଭିତ ଗିରି ଗୁହା
ଦେବୀ ବରୁଣେଇ ଭଗ୍ନୀ କରୁଣେଇ
ବିପଦେ ଆପଦେ ସାହା ।
ଧୂର୍ଜଟି ଜଟାର ଗଙ୍ଗୋତ୍ରୀର ଧାର
ସମସ୍ୱଚ୍ଛ ନିର୍ଝରିଣୀ
ଦେଖି ଉଲ୍ଲସିତ ପଞ୍ଚୁ ପଞ୍ଚଭ୍ରାତ
ଯାଜ୍ଞସେନୀ ସାଥେ ଆଣି ।

ରମଣୀୟ ଗୁମ୍ଫା କୋଳରେ କାଟିଲେ
କାହିଁ କେତେ ମାସ ଦିନ
ଓହ୍ଲେଇ ଆସିଲା ସରଗ ରାଇଜୁ
ସତେ କି ନନ୍ଦନ ବନ ।
ଯୋଦ୍ଧା ସାଧକଙ୍କ ପଦରେଣୁ ପାଇ
ସିଦ୍ଧ ହେଲା ଏହି ସ୍ଥାନ
ପାଣ୍ଡବ ଗୁମ୍ଫାରେ ନାମିତ ହୋଇଲା
ସ୍ମୃତି ଅଛି ଅମଳିନ ।
ଶୁଣିଥିଲା ଦିନେ ଗାଣ୍ଡିବ ଟଙ୍କାର
ଗଦାନାଦ ଏହି ଗିରି
କରିଲା ପ୍ରତ୍ୟକ୍ଷ ଯୁଦ୍ଧ ପାଇକଙ୍କ
ଧରି ଢ଼ାଲ ତରବାରି ।" (୬)

ତ୍ରେତୟା ଯୁଗରେ ପ୍ରଭୁ ଶ୍ରୀରାମଚନ୍ଦ୍ର ଓ ଦ୍ୱାପର ଯୁଗରେ ପଞ୍ଚୁପାଣ୍ଡବ ଏଠାକୁ ଆସିଥିବାର କଂବଦନ୍ତୀ ରହିଛି । ପରବର୍ତ୍ତୀ ସମୟରେ ବୌଦ୍ଧ ସନ୍ନ୍ୟାସୀମାନେ ମଧ୍ୟ ଏଠାକୁ ଆସିଥିଲେ । ଖଣ୍ଡିଗିରି ଓ ଉଦୟଗିରିଠାରେ ଗୁମ୍ଫାର କାରୁକାର୍ଯ୍ୟ ସହିତ ସାମଞ୍ଜସ୍ୟ ରଖି ଏଠାରେ ପଥର ଖୋଦିତ ଶିଳାଲେଖ ତାହାର ପ୍ରମାଣ ଦେଉଛି । Highlights of Khurda and Historic Baruneiରେ ନିମ୍ନମତେ ପ୍ରକାଶ ପାଇଛି:

"Barunai hill are housed the Monastery of the Buddhist pilgrims. From the pattern of their design one can safely surmise that they are an extension of Rock-cut-Monuments of Khandagiri and Udayagiri group. Pandab cave or Pandav Ghara on the nor thern side of the Barunei hill range attracts many visitors through out the year especially in Raja Yatra. In this side Tosali-Ujjayini Rajpath was passed through the Barunei hill. Perhaps this cave was carved in this period of Kharabela. British officer Markham Kitto discovered this in the early thirties cave with much difficulty. Famous Indologist Beglar visited Pandaba Guha in 18.74 and Proved 14 inscriptions."

The hill contains carved of which the largest one is known as Pandaba Guha, capable of accomodating one hundred persons.

Rows of low Rockey pallets line the floor and has obviously been the residence of Hindu ascetics. There are a few inscription of considerable age e.g. that of Makandhawaja yogi, dated 900 of an unspecified era, another dated sambat 780 and three others inscribed on old kutila characters." (7)

ବରୁଣେଇ ପର୍ବତର ପାଣ୍ଡହରା ପାହାଡ଼ର ଶୀର୍ଷରେ ଥିବା ପାଣ୍ଡବ ଗୁମ୍ଫା, ସୀତାକୁଣ୍ଡ, ଶ୍ରୀରାମ ପଥର ବିଭିନ୍ନ ଯୁଗ ବା ସମୟର କୀର୍ତ୍ତିରାଜି ନେଇ ମତ ଉପସ୍ଥାପିତ ହୋଇଛି । ବରୁଣେଇକୁ ଖୋର୍ଦ୍ଧା ସହରରୁ ଗଲାବେଳେ ଏକ ପ୍ରସ୍ତରର ଗମ୍ବୁଜ ଦେଖିବାକୁ ମିଳେ । ଏହା ପିରାମିଡ଼ ସଦୃଶ । ରାସ୍ତାର ଦକ୍ଷିଣପାର୍ଶ୍ୱରେ ଏବଂ ପାହାଡ଼ର ପାଦଦେଶରେ ଏହାର ଅବସ୍ଥିତି । ଏହାର ଉଚ୍ଚତା ୧୮ ଫୁଟ୍ । ତଳୁ ଉପରକୁ ଯିବା ପାଇଁ କୋଡ଼ିଏଟି ଛୋଟ ଆକାରର ପାହାଚ ରହିଛି । ତଳ ଭାଗର ମୋଟେଇ ଉପରକୁ ପିରାମିଡ ଭଳି ହୋଇ କମିଯାଇଛି । ମଝି ପଥରରେ କଣା ବା ଖାଲି ସ୍ଥାନ ରହିଛି । ଐତିହାସିକ ପ୍ରଫେସର ଡ. ଲକ୍ଷ୍ମୀନାରାୟଣ ରାୟସିଂହ ଯିଏ କି ଖୋରଧାର ସମରସାହିତ୍ୟ ଉପରେ ଗବେଷଣା କରି ପି.ଏଚ୍‌ଡି ପାଇଛନ୍ତି ତାଙ୍କ ମତରେ ପାଇକମାନେ ନିର୍ଦ୍ଦିଷ୍ଟ କଣାକୁ ଶର ନିକ୍ଷେପ କରି ସେମାନଙ୍କ ଲକ୍ଷ୍ୟଭେଦର ପରାକାଷ୍ଠା ଦେଖାଉଥିଲେ । ଏହି ପିରାମିଡକୁ 'ବାଣକାଣ୍ଡ' କୁହାଯାଉଥିଲା । ପ୍ରଫେସର ଗୋପାଳକୃଷ୍ଣ ଦାସ ଏହା ନିମ୍ନମତେ ପ୍ରକାଶ କରିଛନ୍ତି- "Banakand, the ancient war pillar for archery is situated on the road side of Barunei. Old people called it Kanda bhadi. The height of this pyramid like structure is 18 feet. With top to bottom is consists 20 small steps with some hole. It has similarities with the monument of Ayodhya village of Nilagiri ex-state of Balasore district."

ଉପରବର୍ଣ୍ଣିତ ବାଣକାଣ୍ଡ ଯାହା କେତେକ ବୟସ୍କ ଲୋକଙ୍କ ମତରେ କାଣ୍ଡଭାଡ଼ି ତାହା ପ୍ରାଚୀନ କାଳରେ ଧନୁର୍ବିଦ୍ୟା ଶିକ୍ଷା ପାଇଁ ବ୍ୟବହାର କରାଯାଉଥିଲା । ନୀଳଗିରି ଗଡ଼ଜାତର ଅଯୋଧା ଗ୍ରାମରେ ମଧ୍ୟ ଏହିଭଳି ଏକ ଗମ୍ବୁଜ ଥିବା ଜଣାପଡ଼େ । କାଇପଦର ସାଆନ୍ତା ଗ୍ରାମର ଭୋଳାନାଥ ପାଇକରାୟ ଏହି ମତକୁ ଗ୍ରହଣ କରନ୍ତି । ପରବର୍ତ୍ତୀ ସମୟରେ ଶିକାରୀମାନେ ଏହି କାମ କାଣ୍ଡଭାଡ଼ି ମଧ୍ୟରେ ରହି ପଥର ଜଳା ମଧ୍ୟରେ ଶିକାରକୁ ଲକ୍ଷ୍ୟ କରି ବନ୍ଧୁକ ସାହାଯ୍ୟରେ ଶିକାର କରିଥିବା ସେ ଶୁଣିଥିବା ପ୍ରକାଶ କରିଛନ୍ତି ।

ଦେବୀ ବରୁଣେଇ ଓ କରୁଣେଇଙ୍କ ପୀଠରେ ତାନ୍ତ୍ରିକମାନେ ପୂର୍ବେ ତନ୍ତ୍ର ପୂଜା କରୁଥିବା ଶୁଣାଯାଏ । ଏହା ଏକ ତନ୍ତ୍ର ସାଧନର ପୀଠ ଥିଲା । ଖୋର୍ଦ୍ଧା ରାଜାଙ୍କର ରାଜଗୁରୁ

ଜୟୀକୃଷ୍ଣ ରାଜଗୁରୁ ମହାପାତ୍ର ଜଣେ ତନ୍ତ୍ର ସାଧକ ଥିଲେ । ଶୁଣାଯାଏ ସେ ଦେବୀଙ୍କୁ ସନ୍ତୁଷ୍ଟ କରି ବର ପାଇଥିଲେ ଯେ ଶତ୍ରୁପକ୍ଷ ସହ ଯୁଦ୍ଧ ହେଲେ ଦେବୀ ତାଙ୍କୁ ସହାୟତା କରିବେ । ଏଭଳି ବିଶ୍ୱାସ ନେଇ ବିଭିନ୍ନ ଗଡ଼ଜାତର ରାଜାମାନେ ନିଜ ନିଜ ରାଜ୍ୟର ଯୁଦ୍ଧଦେବୀଙ୍କୁ ସନ୍ତୁଷ୍ଟ କରି ଯୁଦ୍ଧଯାତ୍ରାରେ ଆଗେଇ ଯାଉଥିଲେ । ଯେଉଁ ରାଜାମାନେ ଯୁଦ୍ଧରେ ଜୟଯୁକ୍ତ ହେଉଥିଲେ ସେମାନେ ଦେବୀଙ୍କ ଆଶିଷରୁ ଜୟଲାଭ କଲେ ବୋଲି ମନେ କରୁଥିଲେ ଓ ଯେଉଁ ରାଜାମାନେ ପରାଜିତ ହେଉଥିଲେ ସେମାନେ ଦେବୀଙ୍କ କରୁଣା ଊଣାହେଲା ବୋଲି ଦୁଃଖରେ ରହୁଥିଲେ ।

ଏ ପ୍ରସଙ୍ଗରେ ପ୍ରଫେସର ଧ୍ରୁବଚରଣ ଜୟସିଂହ ପାଇକରାୟଙ୍କ ଓଡ଼ିଶାର ଐତିହ୍ୟ ପୁସ୍ତକର ପାଠକୁ ବିଚାରକୁ ନେବା ।

## "ବରୁଣାଈଁ-କରୁଣେଈଁ ଓ କାଞ୍ଚିଦେବ୍ୟା ଉପାଖ୍ୟାନ"

ଖ୍ରୀଷ୍ଟୀୟ ଅଠରଶହ ଚାରି ମସିହାରେ ଯେଉଁ ଯୁଦ୍ଧ ହୋଇଥିଲା, ଯେଉଁ ପ୍ରଥମ ପାଇକ ଜାଗରଣ ଘଟିଥିଲା, ତାହାର ନେତୃତ୍ୱ ନେଇଥିଲେ ଜୟୀ ରାଜଗୁରୁ । ଖୋରଧାର କାହାଣୀ ବା କିଂବଦନ୍ତୀ ଅନୁସାରେ ଜୟୀ ରାଜଗୁରୁଙ୍କ ଉପରେ ସନ୍ତୁଷ୍ଟ ହୋଇ ଦେବୀ ବରୁଣାଈଁ ଓ କରୁଣାଈଁ ଅଶ୍ୱପୃଷ୍ଠରେ ଚଢ଼ି ଫିରିଙ୍ଗୀ ସୈନ୍ୟ ସହ ଯୁଦ୍ଧ କରିଥିଲେ । ଏହିପରି ଅଦ୍ଭୁତ, କପୋଳକଳ୍ପିତ, ଦୈବୀଶକ୍ତିର ଯୁଦ୍ଧ କରିଥିବା କଥା ଖୋରଧା ଇତିହାସରେ ନୂଆ ନୁହେଁ । ଏଥିପୂର୍ବରୁ କାଂଚି କାବେରୀ ଯୁଦ୍ଧରେ ଶ୍ରୀଜଗନ୍ନାଥ ଓ ବଳଭଦ୍ର ଯୁଦ୍ଧ କରିଥିବା କଥା ଓଡ଼ିଶାରେ ଅସ୍ଥିମଜ୍ଜାଗତ । ଇଂରେଜ ଫଉଜ ପାଇକମାନଙ୍କ ଉପରକୁ ଯେତେ ଗୁଳିଗୁଳା ବର୍ଷଣ କଲେ ମଧ୍ୟ ଖୋରଧା ସୈନ୍ୟଙ୍କର କିଛି କ୍ଷତି ହେଲାନାହିଁ ।

ରାମେଶ୍ୱର ଗଡ଼ର ଦଳବେହେରାଙ୍କ ଆତ୍ମୀୟା କାଞ୍ଚିଦେବ୍ୟା ଓ ଜୟୀ ରାଜଗୁରୁ ମଧ୍ୟରେ ଏକ ପ୍ରେମ କାହାଣୀ ଶୁଣାଯାଏ । ଏହା ଯୋଗୁଁ କେତେକ ସମାଲୋଚକ ରାଜଗୁରୁଙ୍କୁ ଦୁଶ୍ଚରିତ୍ର, କାମୁକ ଭାବରେ ଚିତ୍ରଣ କରିଥାନ୍ତି । ତେଣୁ ରାଜଗୁରୁଙ୍କ ଉପରେ ପ୍ରତିହିଂସା ଓ ପ୍ରତିଶୋଧ ନେବା ପାଇଁ କାଞ୍ଚିଦିବ୍ୟା ସରକାରୀ ପକ୍ଷକୁ ଗୁପ୍ତରେ ଜଣାଇଦେଲା, ଦେବୀ ବରୁଣାଈଁ ଓ କରୁଣେଈ ଯୁଦ୍ଧ କରୁଛନ୍ତି । ତେଣୁ ଷଣ୍ଢବଳି ଦେଇ ତା' ରକ୍ତରେ ଗୁଳିଗୋଳା ବର୍ଷଣ କଲେ ଦେବୀ ଯୁଦ୍ଧ କ୍ଷେତ୍ରରୁ ପଳାୟନ କରିବେ । ସେହି ଅନୁସାରେ କାର୍ଯ୍ୟ କରିବାରୁ ଦେବୀ ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ । ପାଇକ ବାହିନୀ ଛିନ୍ନଛତ୍ର ହୋଇଗଲେ । ଏହା ଏକ କାହାଣୀ, ଏଥିରେ ଐତିହାସିକ ସତ୍ୟତା ନାହିଁ । (୯)

କିଂବଦନ୍ତୀ ଅନୁସାରେ ଦୁଇଦେବୀ ଇଂରେଜ ସରକାରଙ୍କ ବିରୋଧରେ ଓଡ଼ିଶାର ଗଜପତିଙ୍କୁ ସହାୟତା କରିଥିଲେ । ଦୁଇ ଭଉଣୀ ଦୁର୍ଗ ମଧ୍ୟରେ ରହି ସଂକୀର୍ଣ୍ଣ ପ୍ରାଚୀର ମଧ୍ୟରେ ପ୍ରବେଶ

କରିଥିବା ଇଂରେଜ ସୈନ୍ୟମାନଙ୍କୁ ହତ୍ୟା କରୁଥିଲେ । ଇଂରେଜମାନେ ଏହା ଜାଣିପାରି ଦୁଇ ମୂର୍ତ୍ତିଙ୍କୁ ଅପବିତ୍ର କରି ଶକ୍ତିହୀନ କରିବାରେ ସଫଳ ହେବା ପରେ ଗଜପତି ପରାଜିତ ହୋଇଥିଲେ । ପୁଣି କିଂବଦନ୍ତୀ କହେ ତିନି ସପ୍ତାହ ଅର୍ଥାତ୍ ୨୧ଦିନ ଏହି ଯୁଦ୍ଧ ଚାଲିଥିଲା ।

ଉପର ବର୍ଣ୍ଣିତ କିଂବଦନ୍ତୀ ଅନୁସାରେ ଘଟଣା ଐତିହାସିକ ତଥ୍ୟଠାରୁ ସଂପୂର୍ଣ୍ଣ ଅଲଗା । ପ୍ରକୃତରେ ଯୁଦ୍ଧ ତିନି ସପ୍ତାହ ନୁହେଁ ତିନିଦିନ ମଧ୍ୟରେ ସମାପ୍ତ ହୋଇଥିଲା । ଏହା ଥିଲା ୧୮୦୪ ମସିହା ଡିସେମ୍ବର ୧ ତାରିଖରୁ ୩ ତାରିଖ । ୧୮୦୪ ଡିସେମ୍ବର ୧ ତାରିଖରୁ ୩ ତାରିଖ ପର୍ଯ୍ୟନ୍ତ ଇଂରେଜମାନେ ଗଡ଼କୁ ଚାରି ଦିଗରୁ ଘେରି ଆକ୍ରମଣ କଲେ । ବାହାର ପ୍ରାଚୀର ନିକଟରେ ବାର ପାଉଣ୍ଡିଆ ବ୍ୟାଟେରୀ ୪ଟା, ଛ' ପାଉଣ୍ଡିଆ ବ୍ୟାଟେରୀ ହାଓ୍ୱାଜର ପ୍ରଭୃତି ଆଧୁନିକ ଅସ୍ତ୍ରଶସ୍ତ୍ରମାନ ଓ ତୋପ ଖଞ୍ଜି ସେଥିରୁ ଅନବରତ ଗୁଳିବର୍ଷଣ କଲେ । କୁହାଯାଏ ୩ଦିନ ଧରି ତୋପମାଡ଼ ହୋଇଥିଲା । ଫଳରେ ଗୋଟିଏ ପାଖ ଦେଇ ମେଜର ଫ୍ଲେଚର ଓ ଅନ୍ୟମାନେ ମଧ୍ୟ ଗଲେ । କର୍ଣ୍ଣେଲ ହାରକୋର୍ଟ ଓ ତାଙ୍କର ଦଶହଜାର ସୈନ୍ୟ ଗଡ଼ ଭାଙ୍ଗି ପଶିଲେ । ଏହି ସୈନ୍ୟମାନଙ୍କ ସହ ବାଙ୍କୀ ଓ ଖଣ୍ଡପଡ଼ାର ସର୍ଦ୍ଦାରମାନ ମଧ୍ୟ ଥିଲେ । କିନ୍ତୁ ଗଡ଼ ମଧ୍ୟରେ ରାଜା କି ରାଜଗୁରୁ ନଥିଲେ । ସେମାନେ ଜୀବନ ରକ୍ଷା ପାଇଁ ଗୁପ୍ତବାଟେ ଜଙ୍ଗଲକୁ ଲୁଚି ପଳାଇଥିଲେ । ତିନି ଦିନ ଧରି ଗୁଳିଗୋଳା, ତୋପବର୍ଷଣ ପରେ ରାଜାଙ୍କ କିଛି ସୈନ୍ୟ ବିଶାଳ ଇଂରେଜ ସୈନ୍ୟଙ୍କ ସମ୍ମୁଖୀନ ହୋଇନପାରି ମୃତ୍ୟୁବରଣ କରିଥିଲେ ।" (୧୦)

ଏହି ଯୁଦ୍ଧରେ କେତେ ଇଂରେଜ ସୈନ୍ୟ ଅବା ପାଇକମାନେ ମୃତ୍ୟୁବରଣ କଲେ ତା'ର କୌଣସି ଲିଖିତ ପ୍ରମାଣ ନାହିଁ । ରାଜାଙ୍କର ତିନିଶହ ବେତନଭୋଗୀ ପାଇକଙ୍କ ସହ ଇଂରେଜ ସରକାରଙ୍କର ଦଶହଜାର ସୈନ୍ୟଙ୍କ ସହ ସଂଘର୍ଷ ହୋଇଥିଲା । ଏହି ସଂଘର୍ଷ ତିନି ସପ୍ତାହ ନୁହେଁ ମାତ୍ର ତିନିଦିନ ପାଇଁ ହୋଇଥିଲା । ମା' ବରୁଣେଇଙ୍କ କୃପାରୁ ଯେତେ ତୋପମାଡ଼ କଲେ ବି ପାଚେରି ନ ଭାଙ୍ଗିବା ଏକ ବଡ଼ ଘଟଣା ଥିଲା । ସେଥିପାଇଁ ଏହା ତିନିଦିନ ସମୟ ନେଲା । ଐତିହାସିକ ମୁରଲୀଧର ପ୍ରଧାନଙ୍କ ମତରେ ପାଚେରିର ବେଧ ବା ବହଳତା ସାତରୁ ଆଠ ଫୁଟ୍ ମାଙ୍କଡ଼ା ପଥରରେ ନିର୍ମିତ ହୋଇଥିବାରୁ ଏହା ଭାଙ୍ଗିବା କଷ୍ଟକର ହୋଇଥିଲା । କିନ୍ତୁ ଇଂରେଜମାନଙ୍କ ଆକ୍ରମଣ ସମୟରେ ଗୁଜବ ପ୍ରଚାରିତ ହୋଇଥିଲା ଯେ, ଷଣ୍ଢବଳୀ ଦେଇ ଦେବୀଙ୍କୁ ଅପବିତ୍ର କରିଦେଇଥିବାରୁ ଦେବୀ ଯୁଦ୍ଧରେ ସହାୟ ହୋଇପାରିଲେ ନାହିଁ । ଫଳରେ ଇଂରେଜମାନେ ଗଡ଼ଭାଙ୍ଗି ଗଡ଼ ମଧ୍ୟରେ ପ୍ରବେଶ କଲେ ।

**ତଥ୍ୟଧାରିକା:**


୧. ପୌରାଣିକ ଭାରତବର୍ଷ- (ଦୁନ୍ଦୁଭି-୨୦୧୮- ଦ୍ୱିତୀୟ ସଂଖ୍ୟା) ପୃ-୫୭, ପ୍ରଫେସର ପ୍ରଫୁଲ୍ଲ କୁମାର ପାଇକରାୟ

## ଅଧ୍ୟାୟ # ୫

# ଲାଲ୍‌ମାଟିର ଖୋର୍ଦ୍ଧାଗଡ଼

ବରୁଣେଇ ପାହାଡ଼ର ପାଦଦେଶରେ ଘାଟି ପାହାଡ଼ ତଳେ ରହିଛି ଖୋର୍ଦ୍ଧା ରାଜାଙ୍କର ସେହି ଭଗ୍ନଦୁର୍ଗ ଯାହା ଲାଲମାଟିର ଖୋର୍ଦ୍ଧାଗଡ଼ । ପାଇକ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ପାଇକ ମାଟିର ଗାଥା' କବିତା ପୁସ୍ତକରେ ସ୍ଥାନିତ ହୋଇଛି, ଏଇ 'ଲାଲମାଟିର ଖୋର୍ଦ୍ଧାଗଡ଼' । ତାଂକ ଭାଷାରେ

"ଏଇ ଯେ ଦିଶୁଟି ଲାଲମାଟିର ଖୋର୍ଦ୍ଧାଗଡ଼
ଏ ବୀର ମାଟିର ଉଷ୍ଣ ରକତେ ଯୁଗଯୁଗ ଧରି ଉଷ୍ମତର
ଆସ କଳ୍ପନା ସୁଦୂର ଅତୀତୁ ଆସ ହେ ଆସ ।
କାନେ କାନେ ମୋର କହିଦିଅ ତା'ର ଗଉରବ ଭରା ସେ ଇତିହାସ ।
ଦେଖାଇ ଦିଅ ହେ କଳ୍ପନାରାଣୀ ।
ଏ ଗଡ଼ ବୁକୁରେ ଶୁଭିଲା ଯେ ବାଣୀ,
ବାଜିଲା ସେ ଦିନ ସମରବାଦ୍ୟ
ବୋହିଲା ସେ ଦିନ ଶୋଣିତ ଆଦ୍ୟ
କିଭଳି ଏ ଜାତି ସ୍ୱାଧୀନତା ପାଇଁ ଯୁଦ୍ଧ କରିଛି ଭୀଷଣତର
ଏଇ ଯେ ଦିଶୁଛି ଲାଲ ମାଟିର ଖୋର୍ଦ୍ଧାଗଡ଼ ।

ଏଇ ଯେ ଦିଶୁଛି ଲାଲ ମାଟିର ଖୋର୍ଦ୍ଧା ଗଡ଼
ବରୁଣୀ ପାହାଡ଼ ତଳେ ତଳେ ରହିଛି କେବଳ ପଡ଼ିଆ ବଡ଼ ।
ଆସ କଳ୍ପନା ସୁଦୂର ଅତୀତୁ ଆସ ହେ ଆସ
ଜାତି ନିଃଶ୍ୱାସ ବହୁଥିଲା ଏଥି ବୀର ଗଉରବେ ବରଷ ମାସ ।
ସେ ଦିନ ଏ ଜାତି ଥିଲା କେଉଁଭଳି ଛାତିରେ ବିରାଟ ଆକାଙ୍‌କ୍ଷା ଭରି,
ବିଜୟ ତୂର୍ଯ୍ୟ ବଜାଇ ବଜାଇ
ସ୍ୱାଧୀନ ସପନେ ଜୀବନ ମଜାଇ ।
ସିଂହ ପରାଣ ବୀର ବିକ୍ରମେ ଦିଶୁଥିଲା କିବା ଉର୍ଜସ୍ୱଳ ।
ଏଇ ଯେ ଦିଶୁଟି ଲାଲମାଟିର ଖୋର୍ଦ୍ଧାଗଡ଼ ।

ଏଇ ଯେ ଦିଶୁଛି ଲାଲମାଟିର ଖୋର୍ଦ୍ଧାଗଡ଼
ପାଇକ ଜାତିର ହୃଦପିଣ୍ଡ କି ସ୍ପନ୍ଦିତ ହୁଏ ଥରକୁ ଥର ?

ମନେପଡ଼େ ଯେବେ ବାଜିଲା ଶିଙ୍ଗା ବାଜିଲା ତୂରୀ
ଲକ୍ଷ ଲକ୍ଷ ତରୁଣ ପାଇକ ଧଇଲେ ଖଣ୍ଡା ଧଇଲେ ଛୁରୀ ।
ସିଂହ ପରାଏ ଗରଜି ଗରଜି, ଜୀବନେ ସକଳ ମମତା ବରଜି ।
ସ୍ପର୍ଦ୍ଧା ପାଇକି ଖୋର୍ଦ୍ଧା ଭୂଇଁର
ବଳି ଦେଇ ନିଜ ଉନ୍ନତ ଶିର
ଜାତିର କୀର୍ତ୍ତି ବୁକୁର ରକ୍ତେ ରଖିଦେଇ ଗଲେ ଅନଶ୍ୱର ।
ଏଇ ଯେ ଦିଶୁଛି ଲାଲ ମାଟିର ଖୋର୍ଦ୍ଧାଗଡ଼ ।
ଏଇ ଯେ ଦିଶୁଚି ଲାଲମାଟିର ଖୋର୍ଦ୍ଧା ଗଡ଼,
ବୀର ବୀର୍ଯ୍ୟର ବିରାଟ ସାଧନା ଦେଖିଅଛି ପରା ବହୁତ ଥର
ସେଦିନ ଯାଇଛି ଅତୀତ ଗରଭେ ନୀରବେ ମିଶି
ଦେଖିଛି ଏ ବନ କାନନ ପାହାଡ଼ ଆକାଶ ପବନ ଦିବସ ନିଶି
ଦୁର୍ଗ ପଡ଼ିଛି ଭୂଇଁରେ ଟଳି, ସେ ବୀରଦର୍ପ ଯାଇଛି ଜଳି,
ବରୁଣେଇ ଖାଲି ଟେକିଛି ମଥା ।
ଅତୀତ କାହାଣୀ ଗରବ କଥା
କାନେ କାନେ ଆଜି ସାରା ଓଡ଼ିଶାର କହିଯାଏ କିବା ଲକ୍ଷଥର
ଏଇ ଯେ ଦିଶୁଛି ଲାଲ ମାଟିର ଖୋର୍ଦ୍ଧାଗଡ଼।

ଏଇ ଯେ ଦିଶୁଛି ଲାଲ ମାଟିର ଖୋର୍ଦ୍ଧାଗଡ଼
ହଜାର ହଜାର ବରଷ ପରେ ବି ଜାତିର ଏ ଥିବ ତୀର୍ଥସ୍ଥଳ ।
ଶତ ସହିଦର ପୁଣ୍ୟ ଶୋଣିତ-ବୋଳା ଏ ମାଟି
ଶତ ସର୍ଦ୍ଦାର ବୀର ଖୋର୍ଦ୍ଧାର ଏଇଠି ଦେଇଚି ବକ୍ଷକାଟି
ପାଇକ କିଶୋରୀ ନବ ଯଉବନୀ ସଂଗ୍ରାମେ ଏଥି ସାଜିଛି ସଇନି
ପ୍ରିୟରେ କହିଚି ଚାଲ ରଣେ ଚାଲ
ନିଅ ଏ ଖଣ୍ଡା, ନିଅ ଏ ଢାଲ
ଯୁଗ ଯୁଗ ଧରି ଏ ମାଟି ଆମର ନିଶାଣ ତୋଳିଛି ଶୁଦ୍ଧତାର
ଏଇ ଯେ ଦିଶୁଚି ଲାଲମାଟିର ଖୋର୍ଦ୍ଧାଗଡ଼ ।

କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର 'ଲାଲମାଟିର ଖୋର୍ଦ୍ଧାଗଡ଼' କବିତାର ୧୧ଟି ପଦରୁ ଚାରଟି ପଦ ଏଠାରେ ସ୍ଥାନିତ ହୋଇଛି । ଏହି କବିତାରେ ଖୋର୍ଦ୍ଧାରାଜାଙ୍କର ଶେଷ ଦୁର୍ଗ ଉପରେ ବର୍ଣ୍ଣନା ସ୍ଥାନ ପାଇଛି ।

ଏହି ଖୋର୍ଦ୍ଧାଗଡ଼କୁ ଦେଖି ବିଶିଷ୍ଟ ସାହିତ୍ୟିକ ତଥା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ 'ଖୋରଧାଗଡ଼' ଶୀର୍ଷକ କବିତାରେ ଲେଖିଛନ୍ତି-

"କାଉ କଲା ରାଉ ରାଉ
ଜୟୀ ରାଜଗୁରୁ ଫାଶୀ ପାଇଲେ
କେହି ନ ବୋଇଲା ଥାଉ ।"
ଗଡ଼ ଗଲା କାହିଁ
ଗଡ଼ିଗଲା ଇତିହାସ
ଜଜାରସିଂହରୁ ଅଳ୍ପଦୂର ଗଲେ
ଗିରି ବରୁଣାଇ ପାଶ
ବନ୍ଧା ହୋଇଥିଲା ଏକ ମହାଗଡ଼
ଆଜି ଖାଲି ତାହା
ବୁଦା ଗୁଳ୍ମ ଆଉ ଜଙ୍ଗଲ ମାଟି ଓ ଘାସ ।
ବକସିଙ୍କ ପଥର
ରାଜଗୁରୁଙ୍କ ଫାଶିଦିଆ ବରଗଛ ।"(୨)

ଏ ପ୍ରସଙ୍ଗରେ କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ "ବରୁଣି ପାହାଡ଼, ବରୁଣି ପାହାଡ଼" କବିତାରେ ଲେଖିଛନ୍ତି-

"ବରୁଣି ପାହାଡ଼! ବରୁଣି ପାହାଡ଼ ।
କହ କହ କା'ର ଏ ବୁକୁହାଡ଼?
ଢାଳିଦେଲା କିଏ ଛାତିର ଶୋଣିତ
ଲଭିବାକୁ କେଉଁ ଶୀରି?
କିଆଁ ପଡ଼ିଅଛି ଏଠି କଙ୍କାଳ?
କି କଥା କହିବ ବୋଲି ।
ବରୁଣି ପାହାଡ଼! ବରୁଣି ପାହାଡ଼ ।
କହ କେଉଁପରି ଗଢ଼ିବି ମୁଁ ଗଡ଼
କାହିଁକିଗଲା ସବୁ ସାହସର ଶିଖା
ଦୃପ୍ତ ପ୍ରାଣର ଅଗ୍ନି ପରୀକ୍ଷା?
ଅବା ସେ ପଡ଼ିଛି ଦୁନ୍ଦୁଭି ହାଡ଼
କେଉଁ ରାମପଦ
ଭାଙ୍ଗିବ ତା' ପହଡ଼!

କହ ଖୋରଧାର ମାଟି !
ଆଉ ଥରେ ସତେ ରକ୍ତ କରବୀ
ଏ ଦେଶେ ଉଠିବ କି ଫୁଟି ।
ତକ୍ ତକ୍ ଲାଲ ତଲୱାର ପରି
ପାଇକର ଦେହ ଉଠିବ କି ଜଳି ?
ରକତ ଚନ୍ଦନ ବୃକ୍ଷର ପ୍ରାୟେ
ଝଡ଼ ଝଞ୍ଜାକୁ କାଟି ।
କହ ବରୁଣେଇ
କହ ଗଡଖାଇ
କ୍ଷୁରଧାର ପରି ତୋ ବୁକୁ ନିଶାଣ
ରହେ କିଆଁ ମଥା ପୋତି ?
କହ ଖୋରଧାର ମାଟି ।'(୩)

ଖୋର୍ଦ୍ଧାର ଏହି ଭଗ୍ନଗଡ଼ ଉପରେ ପ୍ରତ୍ନତତ୍ତ୍ୱବିତ୍ ଦୁର୍ଗାଚରଣ ପଣ୍ଡା ଏକ ବିବରଣୀ ପ୍ରଦାନ କରିଛନ୍ତି ଯାହା 'ପୌରୁଷ' ପତ୍ରିକାର ୪୨ ବର୍ଷ, ସପ୍ତମ ଓ ଅଷ୍ଟମ ସଂଖ୍ୟା (ଜାନୁଆରୀ ଓ ଫେବୃଆରୀ ୨୦୦୯)ରେ ପ୍ରକାଶ ପାଇଛି । ଗଡ଼ର ବର୍ଣ୍ଣନା ନିମ୍ନମତେ ସ୍ଥାନ ପାଇଛି ।

"ଗଡ଼ଟି ବର୍ଗାକାର, ପ୍ରତ୍ୟେକ ପାଖ ପ୍ରାଚୀର ପ୍ରାୟ ୧୪୦ମିଟର ଲମ୍ବ । ପୂର୍ବ ପଟ ବା ସମ୍ମୁଖ ପାଖର ପ୍ରାଚୀର ମୁଖ୍ୟତଃ କଳାପଥର ଓ ମାଙ୍କଡ଼ା ପଥରରେ ନିର୍ମିତ ହୋଇଥିବାବେଳେ ଅନ୍ୟ ତିନି ପାଖରେ ପ୍ରାଚୀର ମାଟି ଓ ମାଙ୍କଡ଼ା ପଥର ଅଟେ । ପ୍ରାଚୀରଟିର ମୌଳିକ ଆକାର ନଷ୍ଟ ହୋଇପଡ଼ିଥିବାବେଳେ ପୂର୍ବେ ଏହାର ଚଉଡ଼ା ପ୍ରାୟ ୫୦୦ ମିଟର ଥିବା ସମ୍ଭବ । ଗଡ଼ଗୁଡ଼ିକରେ ସାଧାରଣତଃ ଚାରିପାଖରେ ଚାରିଗୋଟି ଦ୍ୱାର ରହୁଥିବାବେଳେ ଖୋର୍ଦ୍ଧାଗଡ଼ର ମୁଖ୍ୟଦ୍ୱାର ବ୍ୟତୀତ ଉତ୍ତରପାର୍ଶ୍ୱ ପ୍ରାଚୀରରେ ଏକ ସଂକୀର୍ଣ୍ଣ ପଥ ଦେଖାଯାଉଛି । ତେବେ ଅନ୍ୟ ପଥଗୁଡ଼ିକ ପୋତି ହୋଇପଡ଼ିଥିବା ସମ୍ଭବ । ପ୍ରତ୍ୟେକ ଗଡ଼ ସହିତ ସୁରକ୍ଷା ନିମନ୍ତେ ଗଡ଼ଖାଇ ଏକ ଅନିବାର୍ଯ୍ୟ ଅଙ୍ଗ । ଏଠାରେ ଗଡ଼ଖାଇଟି ସଂପୂର୍ଣ୍ଣ ପୋତିହୋଇ ପଡ଼ିଥିବା ସମ୍ଭବ । ପୂର୍ବ ପାଖ ପ୍ରାଚୀରର ମଧ୍ୟଭାଗରେ ଥିବା ମୁଖ୍ୟ ପ୍ରବେଶଦ୍ୱାରର ଭିତରେ ମାଙ୍କଡ଼ା ପଥର ଦିଆଯାଇଥିବାବେଳେ ବାହାର ପାଖ କଳାପଥରରେ ତିଆରି । ପ୍ରବେଶ ଦ୍ୱାରଟିର ଉନ୍ମୁକ୍ତ ପଥର ଲମ୍ବ ୮.୩ ଓ ପ୍ରସ୍ଥ ୩.୧ ମିଟର ଅଟେ । ଏଥିରେ ଦୁଇଫାଳିଆ ଦୁଇଟି କବାଟ ଥିବାର ସୂଚନା ମିଳେ । ଖୋଲିବାବେଳେ କବାଟଗୁଡ଼ିକ ଦୁଇ ପାର୍ଶ୍ୱରେ ଆଉଜି ରହିବା ନିମନ୍ତେ ପ୍ରବେଶଦ୍ୱାରର ମଧ୍ୟଭାଗକୁ ଅଧିକ ଚଉଡ଼ା କରାଯାଇଛି । ମୁଖ୍ୟଦ୍ୱାରର ଦୁଇ ପାର୍ଶ୍ୱର କିଞ୍ଚିତ ଦୂରରେ

ପ୍ରାଚୀର ସହିତ ସଂଯୁକ୍ତ ଦୁଇଟି ଆୟତାକାର ଖମ୍ବ ସଦୃଶ ନିର୍ମାଣର ଭଗ୍ନାବଶେଷ ଦେଖିବାକୁ ମିଳେ । ବୋଧହୁଏ ଏହା ଉପରେ ପ୍ରହରୀମାନେ ରହି ଗଡ଼ରେ ପ୍ରବେଶ କରୁଥିବା ବ୍ୟକ୍ତି ତଥା ଶତ୍ରୁମାନଙ୍କ ଉପରେ ଦୃଷ୍ଟି ରଖୁଥିଲେ ।

ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ମୁଖ୍ୟତଃ ଗଡ଼ର ଦକ୍ଷିଣ-ପୂର୍ବ ଭାଗ ପରିଷ୍କାର ହୋଇଥିଲା । କିନ୍ତୁ ଅନ୍ୟ ପାର୍ଶ୍ୱଗୁଡ଼ିକ ଅସଂପୂର୍ଣ୍ଣ ରହିଗଲା । ଦୃଶ୍ୟମାନ ଏହି ନିର୍ମାଣଗୁଡ଼ିକର ପ୍ରତ୍ନାବଶେଷକୁ ମୂଳତଃ ଦଶଭାଗରେ ବିଭକ୍ତ କରାଯାଇପାରେ । (୧) ପ୍ରବେଶ ଦ୍ୱାର ସମ୍ମୁଖ ଭାଗଟି ପ୍ରଶାସନିକ ବିଭାଗ । ଏହା ମଧ୍ୟକୁ ପ୍ରବେଶ କରିବା ନିମନ୍ତେ ସଳଖ ରାସ୍ତା ନଥିବାବେଳେ ସମ୍ମୁଖରେ ଏକ ପ୍ରହରୀ ଗୃହ ଥିଲା । ସମ୍ମୁଖର ଉଚ୍ଚ ପ୍ରାଚୀର ସଦୃଶ ନିର୍ମାଣର ଭିତର ପାଖରେ ଏକ ବିଶାଳ ସଭାଗୃହ, କଚେରୀ, ଖଜଣା ଗୃହ ତଥା ରାଜକୀୟ କାର୍ଯ୍ୟ ନିମନ୍ତେ ଅନେକ କୋଠରୀ ଥିଲା । (୨) ନିର୍ମାଣର ଦ୍ୱିତୀୟ ଭାଗଟି ରାଜ କର୍ମଚାରୀମାନଙ୍କ ବିଶ୍ରାମ ତଥା ଅତିଥିମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଥିଲା । ଏହା ମଧ୍ୟରେ ବାରଣ୍ଡାଯୁକ୍ତ ଅନେକ କୋଠରୀ ସହିତ ଭଣ୍ଡାରଘର ଓ ରୋଷଘରର ବ୍ୟବସ୍ଥା ଥିଲା । (୩) ତୃତୀୟଭାଗର କମାଣଗୁଡ଼ିକ ଚାରିପାର୍ଶ୍ୱର ପ୍ରାଚୀର ଦ୍ୱାରା ସୁରକ୍ଷିତ ଥିଲା । ଏହାର ଗୋଟିଏ କୋଠରୀର ମଧ୍ୟ ଭାଗରେ ଏକ ସୁନ୍ଦର ଗାଧୁଆକୁଣ୍ଡ ବା ମଜଣାକୁଣ୍ଡ ନିର୍ମିତ ହୋଇଥିଲା । ଏଥିରେ ପାଣି ପ୍ରବେଶ କରିବା ଓ ନିଷ୍କାସନ ହେବା ପାଇଁ ନଳାର ବ୍ୟବସ୍ଥା ଥିଲା । କୋଠରିର ଚଟାଣ ଓ କାନ୍ଥଗୁଡ଼ିକ ଚୂନ ପଲସ୍ତରା ଦ୍ୱାରା ମସୃଣ କରାଯାଇଥିଲା । ଏହା ରାଣୀ ଅନ୍ତଃପୁର ହୋଇଥିବା ବେଳେ ଏହା ସହିତ ଥିବା ଅନ୍ୟ କୋଠରୀଗୁଡ଼ିକ ରାଜା ତଥା ରାଜ ପରିବାରର ଅନ୍ୟ ସଦସ୍ୟଙ୍କ ନିମନ୍ତେ ଉଦ୍ଦିଷ୍ଟ ଥିବା ସମ୍ଭବ । ଏହା ବ୍ୟତୀତ ପରିସର ମଧ୍ୟରେ ଏକ ସ୍ୱତନ୍ତ୍ର ରୋଷଘରର ବ୍ୟବସ୍ଥା ଥିବା ଦେଖାଯାଇଛି । (୪) ଅନ୍ତଃପୁରର ପଶ୍ଚିମକୁ ଥିବା ଚତୁର୍ଥ ଭାଗରେ ଏକ ବଡ଼ କୋଠରି ମଧ୍ୟରେ ନାଳଯୁକ୍ତ ଏକ ବର୍ଗାକାର କୁଣ୍ଡ ଓ ବାହାର ବେଢ଼ାରେ ଅନ୍ୟ କେତେକ କୋଠରିର ସୂଚନା ମିଳେ । ଏହା ରାଜାଙ୍କ ଆମୋଦପ୍ରମୋଦ ଗୃହ ହୋଇଥିବା ସମ୍ଭବ । (୫) ପଞ୍ଚମ ସ୍ଥାନଟିକୁ ଲୋକେ ରାଣୀ ପୋଖରୀ କହୁଥିବାବେଳେ ଏହା ଏକ ଗଭୀର ପଥର ଗାଡ଼ିଆ । ଆୟତାକାର ପୋଖରୀର ଚତୁର୍ଦ୍ଦିଗର ଧାର ଅସମାନ ଓ ତୀଖ । ଏଣୁ ଭିତରକୁ ପ୍ରବେଶ କରିବା ନିମନ୍ତେ ପଶ୍ଚିମ ପାଖ ପଥୁରିଆ ଭୂମିକୁ କାଟି ଏକ ସଂକୀର୍ଣ୍ଣ ପାହାଡ଼ି ରାସ୍ତା କରାଯାଇଥିଲା । ପୂର୍ବେ ପୋଖରୀର ଚାରିପାଖରେ ମାଙ୍କଡ଼ାପଥର ବନ୍ଧ ଦିଆଯାଇଥିବାର ସୂଚନା ମିଳେ । ପୋଖରୀଟି ପୂର୍ବ ବର୍ଣ୍ଣିତ ଚାରି ବିଭାଗର ନିକଟବର୍ତ୍ତୀ ହୋଇଥିବାବେଳେ ଏହାର ଦକ୍ଷିଣ ଓ ପଶ୍ଚିମ ଭାଗରେ ଦୁଇଟି ଉଦ୍ୟାନ ସହିତ ଏକ ମଣ୍ଡପ ଓ ଫୁଆରା ମଧ୍ୟ ରହିଥିଲା । ପ୍ରତ୍ୟେକ ଗଡ଼ ମଧ୍ୟରେ ରାଜ ପରିବାରର ଇଷ୍ଟଦେବୀଙ୍କ ଆସ୍ଥାନ ମଧ୍ୟ ଥାଏ- ଗଡ଼ର ଉତ୍ତର-ପୂର୍ବ (ଐଶାନ୍ୟ କୋଣରେ) । (୬) ଗଡ଼ ମଧ୍ୟରେ ପଶ୍ଚିମ ପାର୍ଶ୍ୱର ପଡ଼ିଆଟି

ବୋଧହୁଏ ପାଇକମାନଙ୍କ ସମରାଭ୍ୟାସ ପାଇଁ ଉଦ୍ଦିଷ୍ଟ ଥିଲା । (୭) ଏହି ପଡ଼ିଆ ମଧ୍ୟରେ ଏକ ଦୁଇ ବଖରିଆ ଘର ସହିତ ଏକ ବେଦୀର ସନ୍ଧାନ ମିଳିଛି । (୮) ଏହାର ଦକ୍ଷିଣ ପାର୍ଶ୍ୱରେ ଥିବା କୁଦଠାରେ ଅସ୍ତ୍ରାଗାର ଥିଲା । (୯) ଏହା ସଂଲଗ୍ନରେ ହସ୍ତୀ ଓ ଅଶ୍ୱଶାଳା ଥିବା ଅନୁମାନ କରାଯାଇପାରେ । (୧୦) ରାଣୀ ଅନ୍ତଃପୁର ଓ ରାଜାଙ୍କ ପ୍ରମୋଦ ଗୃହର ପଶ୍ଚାତଭାଗରୁ କେତେ ଭଗ୍ନ ପଥର କୁଣ୍ଡର ସନ୍ଧାନ ମିଳିଥିଲା । ବୋଧହୁଏ ଏଠାରେ ରାଜାଙ୍କ ଗୋଶାଳା ଥିଲା । ତେବେ ଖନନ ଅସଂପୂର୍ଣ୍ଣ ଥିବାରୁ ଗଡ଼ର ନିର୍ମାଣ କୌଶଳ ଉପରେ ସଂପୂର୍ଣ୍ଣ ଅଧ୍ୟୟନ ଓ ଅନୁଶୀଳନ ସମ୍ଭବ ହୋଇପାରିନାହିଁ ।

ପ୍ରତ୍ନତାତ୍ତ୍ୱିକ ଖନନରୁ ପ୍ରାପ୍ତ ବିଭିନ୍ନ ପ୍ରକାର ବସ୍ତୁ ଓ ତା'ର ଭଗ୍ନାବଶେଷ ଗୁରୁତ୍ୱପୂର୍ଣ୍ଣ ଅଟେ । ଏହା ସ୍ଥାନର ତତ୍କାଳୀନ ସ୍ଥିତି ଓ ସମୟ ନିର୍ଘଂଟ କରିବାର ସହାୟକ ହୋଇଥାଏ । ଖୁରୁଧାଗଡ଼ ଚଳଚଂଚଳ ଥିବାବେଳେ ଓଡ଼ିଶା ସମେତ ଭାରତର ସର୍ବତ୍ର ରାଜା ମହାରାଜା ତଥା ଉଚ୍ଚ ଶ୍ରେଣୀର ଲୋକେ ବିଭିନ୍ନ ପ୍ରକାର ଧାତବ ପାତ୍ର ଓ ବସ୍ତୁବହୁଳ ଭାବରେ ବ୍ୟବହାର କରୁଥିଲେ । ତେବେ ଯେଉଁ ସମୟ ଓ ପରିସ୍ଥିତିରେ ଖୁରୁଧାଗଡ଼ର ପତନ ଘଟିଲା, ସେହି ସ୍ଥାନରୁ ପରବର୍ତ୍ତୀ ସମୟରେ କୌଣସି ମୂଲ୍ୟବାନ ଧାତବ ପଦାର୍ଥ ମିଳିବା ସମ୍ଭବ ନୁହେଁ । କିନ୍ତୁ ଖନନରୁ ପ୍ରାପ୍ତ ବହୁ ମାଟିପାତ୍ର ଓ ପାତ୍ରାଂଶ ତଥା ଲୌହ ପଦାର୍ଥ ଗଡ଼ ସମ୍ପର୍କରେ ଅନେକ କିଛି ସୂଚନା ଦିଏ । ଏହା ମଧ୍ୟରେ ଅନେକ ଭଗ୍ନ ଅବଢ଼ା କୁଡୁଆ ଅନ୍ତର୍ଭୁକ୍ତ, ଯାହାକି ଶ୍ରୀଜଗନ୍ନାଥ ମନ୍ଦିର ସହିତ ଗଡ଼ର ନିବିଡ ସମ୍ପର୍କ ପ୍ରତିପାଦନ କରେ । ଅନ୍ୟ ମୃଣ୍ମୟ ପାତ୍ରଗୁଡ଼ିକ ସାଧାରଣତଃ ବିଭିନ୍ନ ଆକାର ପ୍ରକାରର କଳସୀ, ସରା, ପଲମ, ବିଭିନ୍ନ ପ୍ରକାରର ଛୋଟ ବଡ଼ ହାଣ୍ଡିର ଅଂଶବିଶେଷ । ଏଥି ମଧ୍ୟରୁ ଅନେକ ଦୁଗ୍ଧ ଓ ଦୁଗ୍ଧଜାତ ପଦାର୍ଥ ଯଥା; ଦହି, ଘିଅ ଇତ୍ୟାଦିର ବ୍ୟବହାର ନିମନ୍ତେ ଉଦ୍ଦିଷ୍ଟ ଥିବା ଜଣାଯାଏ । ପଲମ ଓ ଅନେକ ଚଉଡ଼ାମୁହଁ ହାଣ୍ଡି ମିଷ୍ଟାନ୍ନ ରନ୍ଧନ ପାଇଁ ବ୍ୟବହୃତ ହେଉଥିଲା । ପ୍ରାପ୍ତ ବଡ଼ ବଡ଼ ହାଣ୍ଡି ଓ ଘୁମଗୁଡ଼ିକର ଅଂଶରୁ ଏଥିରେ ଜଳ ଓ ଶସ୍ୟ ପଦାର୍ଥ ସଂରକ୍ଷଣ ହେଉଥିବାର ସୂଚନା ମିଳେ । ଗଡ଼ ମଧ୍ୟରେ ମାଟି ଦୀପ ଓ ଚିଲମର ବ୍ୟବହାର ମଧ୍ୟ ଥିଲା । ଏହା ବ୍ୟତୀତ ଏଠାରୁ କେତେକ ସୂକ୍ଷ୍ମ ଓ ମସୃଣ ଧୂସର ଓ ଈଷତ୍ ଧଳା ରଙ୍ଗର ମାଟିପାତ୍ର ଓ ପାତ୍ରାଂଶ ପ୍ରାପ୍ତ ହୋଇଛି । ଏହି ପ୍ରତ୍ନାବଶେଷଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ହେଲେ ହେଁ, ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗରେ ଏଗୁଡ଼ିକ କେଉଁ ପରିସ୍ଥିତିରେ ରହିଛି କହିବା କଷ୍ଟକର । (୪)

ଭଗ୍ନ ଖୋର୍ଦ୍ଧାଗଡ଼ର ଖନନ କାର୍ଯ୍ୟ ରାଜ୍ୟ ପ୍ରତ୍ନତାତ୍ତ୍ୱିକ ବିଭାଗ ଦ୍ୱାରା ୧୯୮୯-୯୦ ମସିହାରେ ହୋଇଥିଲା । ପ୍ରତ୍ନତତ୍ତ୍ୱବିତ୍ ଦୁର୍ଗାଚରଣ ପଣ୍ଡା ଖନନ କାର୍ଯ୍ୟ ପରେ ଉପରବର୍ଣ୍ଣିତ ବିବରଣୀ ଉଲ୍ଲେଖ କରିଥିଲେ । ଖୋର୍ଦ୍ଧା ବକ୍ସି ଜଗବନ୍ଧୁ ହାଇସ୍କୁଲ୍‌ର ପ୍ରାକ୍ତନ ପ୍ରଧାନଶିକ୍ଷକ

ଐତିହାସିକ ମୁରଲୀଧର ପ୍ରଧାନ, ତାଙ୍କର ସହଯୋଗୀ ଖୋର୍ଦ୍ଧା ଐତିହାସିକ ସମାଜର ସମ୍ପାଦକ ବୈକୁଣ୍ଠନାଥ ରାଜଗୁରୁ ଓ ଶରଧାପୁରର ସମାଜସେବୀ ଲକ୍ଷ୍ମୀଧର ବଡ଼ଜେନାଙ୍କୁ ସାଙ୍ଗରେ ନେଇ ଭଗ୍ନ ଖୋର୍ଦ୍ଧାଗଡ଼ର ଖନନ ପରେ ପରେ ଯେଉଁ ତଥ୍ୟ ସଂଗ୍ରହ କରିଥିଲେ ଏବଂ 'ଜଗନ୍ନାଥପୁର କଟକ ଏକ ଅଧ୍ୟୟନ' ଶୀର୍ଷକ ଏକ ଲେଖାରେ 'କସ୍ତୁରୀ' ପତ୍ରିକାରେ ପ୍ରକାଶ କରିଥିଲେ ସେଥିରୁ କିଛି ଅଂଶ ଅବତାରଣା କରୁଛି: "ଏହା ଏକ ଚତୁଷ୍କୋଣାକାର ଦୁର୍ଗ । ଦୀର୍ଘ ୮୦୦ ଫୁଟ୍ ଓ ପ୍ରସ୍ଥ ୮୦୦ ଫୁଟ୍ । ଚାରି ଦିଗରେ ଚାରିଗୋଟି ଦ୍ୱାର କିନ୍ତୁ ପୂର୍ବ ଦ୍ୱାରଟି ମୁଖ୍ୟ । ଦୁର୍ଗର ଠିକ୍ ଉତ୍ତରକୁ ସୀମାକୁ ଲାଗି ଗଡ଼ଖୋର୍ଦ୍ଧା ଗ୍ରାମ ଅବସ୍ଥିତ । ଦୁର୍ଗର ବାହ୍ୟ ପ୍ରାଚୀର ଥିବା ପରି ଅନୁମିତ ହୁଏ । ମାତ୍ର ତା'ର ଚିହ୍ନବର୍ଣ୍ଣ ବିଶେଷ ପରିଦୃଷ୍ଟି ହୁଏ ନାହିଁ । ମାଟିରେ ମିଶିଗଲା ପରି ଜଣାପଡ଼େ । ତା' ପାଖକୁ ୨୦ କି ୩୦ ଫୁଟ୍ ଖାଲ ଜାଗା ଅଛି । ତାହା ଗଡ଼ଖାଇ ଥିଲା ବୋଲି ଗ୍ରାମର ହାଡ଼ିବନ୍ଧୁ ପାତ୍ରଙ୍କ ସମେତ କେତେକ କହିଲେ । ଭିତର ପାଖ ପାଚେରିରୁ ସବୁ ସ୍ଥାରୁ ମାଟି ଉଠିନାହିଁ । ଯେତିକି ଅଂଚଳ ଉଦ୍ଧାର ହୋଇଛି ସେଥିରୁ ପାଚେରିର ପ୍ରସ୍ଥ ଜଣାପଡ଼େ । ପାଚେରିଟି ମାଙ୍କଡ଼ା ପଥରରେ ନିର୍ମିତ ସ୍ଥାନେସ୍ଥାନେ ଖଣ୍ଡେ ଖଣ୍ଡେ କଳା ପଥର ଲାଗିଛି । ପାଚେରିର ପ୍ରସ୍ଥ ପ୍ରାୟ ୧୫ଫୁଟ୍ ହେବ । ଦୁଇ ହଳ ବଳଦ ସ୍ୱଚ୍ଛନ୍ଦରେ ଏକ ସମୟରେ ତା' ଉପରେ ବୁଲି ପାରିବେ । ଆହୁରି ଦକ୍ଷିଣକୁ ଗଲେ କେତେକ ପଥର ଗୃହର ଭଗ୍ନାବଶେଷ ଦୃଷ୍ଟିକୁ ଆସେ । ଏହାଥିଲା ରାଣୀ ଉଆସ । ସବୁ ଭାଙ୍ଗିରୁଜି ଯାଇଛି । ତେବେ ବାରଣ୍ଡା ଓ ପଥର ପିଣ୍ଡା ସଂପୂର୍ଣ୍ଣ ବାରି ହୋଇଯାଉଛି । ଟିକିଏ ନିରୀକ୍ଷଣ କରିବାରୁ ବାରଣ୍ଡା ତଳପଥରରେ ନାନାପ୍ରକାର କାମକୁଟ ହୋଇଥିବାର ଦେଖାଗଲା । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଦୁର୍ଗପତନର ଦୁଇଶହ ବର୍ଷ ପରେ ମଧ୍ୟ କାରୁକାର୍ଯ୍ୟ ଅବିକଳ ଅଛି ।

ଦୁର୍ଗର ପଶ୍ଚିମାଞ୍ଚଳ ସେହିପରି ମାଟିକୁଦ ହୋଇରହିଛି । ଦୁର୍ଗର ଅଭ୍ୟନ୍ତରରେ ଉତ୍ତର ପାର୍ଶ୍ୱକୁ ୧୫୦ ଫୁଟ ଲମ୍ବ ଓ ୧୦୦ ଫୁଟ ଓସାର ବିଶିଷ୍ଟ ଏକ ବିସ୍ତୀର୍ଣ୍ଣ ଅଞ୍ଚଳରୁ ମାଟି ଉଦ୍ଧାର ହୋଇଛି । ବର୍ତ୍ତମାନ ଏହି ସ୍ଥଳରେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମିଳିତ ପ୍ରଚେଷ୍ଟାରେ ସାଂସ୍କୃତିକ କାର୍ଯ୍ୟମାନ ସମ୍ପାଦନ କରାଯାଇଅଛି । ଏଠାରେ ଦଶହଜାର ଲୋକ ବସିପାରିବା ଭଳି ସ୍ଥାନ ଅଛି । ଏହି ସ୍ଥାନର ଦକ୍ଷିଣ ଦିଗକୁ ଗଡ଼ର ମଧ୍ୟଭାଗରେ ଏକ ଗଭୀର ପୁଷ୍କରିଣୀ ବିଦ୍ୟମାନ । ପୁଷ୍କରିଣୀ ଭିତରକୁ ଦକ୍ଷିଣ ଦିଗର ଗଡ଼ଖାଇଆଡୁ ଜଳ ପ୍ରବେଶ କରୁଥିବାର ଗୋଟିଏ ବାଟ ଥିଲା । ପୁଷ୍କରିଣୀର ଦକ୍ଷିଣ ଦିଗକୁ ଲାଗି ଏକ ଚିକ୍କଣ ୧୫'x୧୨'ର ଚଟାଣ ଆମ୍ଭମାନଙ୍କ ଦୃଷ୍ଟିକୁ ଆସିଲା । ଏହି ସ୍ଥାନଟି ଠିକ୍ ପୁଷ୍କରିଣୀ ବନ୍ଧ ଉପରେ ଥିବାରୁ ଏହା ଦୁର୍ଗ ନିବାସୀ ମହିଳାମାନଙ୍କର ସ୍ନାନ ଘରେ ବସ୍ତ୍ର ପରିବର୍ତ୍ତନର ସ୍ଥାନ ହୋଇପାରିଥାଏ କିମ୍ବା କୌଣସି ଠାକୁର ମନ୍ଦିରର ମୂଳପତ୍ତନ ହୋଇପାରିଥାଏ । ପୁଷ୍କରିଣୀର ପଶ୍ଚିମ ଦିଗକୁ ଦୃଷ୍ଟି ନିକ୍ଷେପ କଲେ ଏହା ଜଣାଯାଏ। ଚାରିଫୁଟ୍ ଗୋଲେଇର

ତିନିଫୁଟ୍ ଉଚ୍ଚର ଗୋଲାକାର ପ୍ରସ୍ତର ଖୁଣ୍ଟିମାନ ପ୍ରୋଥିତ ହୋଇଛି । ବର୍ଷାପାଣି, ପବନ ଓ ସୂର୍ଯ୍ୟାଲୋକରେ ଖୁଣ୍ଟିଗୁଡ଼ିକ ଆବୁଖାବୁଆ ହୋଇଯାଇଛି ଓ କେତେକ ନଷ୍ଟ ହୋଇଗଲାଣି । ସର୍ବମୋଟ୍ ୬ଟି ଖୁଣ୍ଟି ସେଠାରେ ଦେଖିବାକୁ ମିଳେ । କେତେକ ଲୋକ କହିଲେ ଏଠାରେ ହାତୀବନ୍ଧା ହେଉଥିଲା । ଦକ୍ଷିଣ ଦିଗକୁ ଠିକ୍ ଦୁର୍ଗର ମଧ୍ୟଭାଗରେ ୩୦୦ ବର୍ଗଫୁଟ୍ ବିଶିଷ୍ଟ ଏକ ଚିକ୍କଣ ଚଟାଣ ଦେଖିବାକୁ ମିଳିଥିଲା । ଏହା ଚୂନରେ ତିଆରି ହୋଇଥିଲା ।

ଦୁର୍ଗର ଦକ୍ଷିଣ ଦିଗରେ ଦୁର୍ଗ ସୀମାର ଅପରପଟେ ବରୁଣେଇ ପାହାଡ଼ର କାନ୍ଥିରେ ପୋତି ହୋଇପଡ଼ିଥିବା ଗୃହମାନଙ୍କରୁ ପଥରଖଣ୍ଡ ସଂଗ୍ରହ କରି ଗଡ଼ ଖୋରଧା ଗ୍ରାମର କେତେକ ଲୋକ ନିଜ ନିଜ ଗୃହରେ ବ୍ୟବହାର କରୁଅଛନ୍ତି । ଅନୁସନ୍ଧାନରୁ ଜଣାଯାଏ ବରୁଣେଇ ପାହାଡ଼ର କାନ୍ଥିରେ ନିର୍ମିତ ପ୍ରସ୍ତର ଗୃହଗୁଡ଼ିକ ଗଜପତି ମହାରାଜାଙ୍କର ସୈନ୍ୟସାମନ୍ତ, ପାତ୍ର, ମନ୍ତ୍ରୀ, କଟୁଆଳ, ସେନାପତି ପ୍ରମୁଖ ସାମନ୍ତମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିଲା । ସେମାନଙ୍କ ଘରଗୁଡ଼ିକ ଭାଙ୍ଗିଯାଇଥିଲେ ମଧ୍ୟ ସେମାନେ ବ୍ୟବହାର କରୁଥିବା ପୋତାକୂପଗୁଡ଼ିକର ସନ୍ଧାନ ମିଳିଛି । ଦୁର୍ଗ ଭିତରେ 'ଖାଇକୂଅ' ବୋଲି ଯେଉଁ ବିରାଟ କୂପ ଥିଲା ତା'ର ନିର୍ମାଣ କୌଶଳରୁ ଏହା ସମଗ୍ର ଦୁର୍ଗକୁ ପାନୀୟ ଜଳ ଯୋଗାଉଥିଲା ।

ରାଣୀମହଲ ପ୍ରସ୍ତର ଗୃହର ଲମ୍ବ ପ୍ରାୟ ଶହେଫୁଟ୍ ହେବ । ଏହି ମହଲର ମୂଳପତନ ନିଖୁଣ ଅବସ୍ଥାରେ ଅଛି । ପ୍ରସ୍ତର କାନ୍ଥର ନିର୍ମାଣରେ ଚୂନ ଲାଗିନାହିଁ । ପଥରରୁ ପଥର ଏପରି ଘଷା ହୋଇ ତିଆରି ହୋଇଛି ଯେ ଏତେଦିନ ପରେ ପଥର ଦେହରେ ଫାଙ୍କ ସୃଷ୍ଟି ହୋଇନାହିଁ କି ପଥରରେ ଅଙ୍କିତ କାରୁକାର୍ଯ୍ୟ ବିଶେଷ ନଷ୍ଟ ହୋଇନାହିଁ । ପୂର୍ବପାଖ ସମ୍ମୁଖ ପ୍ରବେଶଦ୍ୱାରର ଉତ୍ତରକୁ ସମଦୂରବର୍ତ୍ତୀ ଫାଟକଠାରୁ ପଚାଶଫୁଟ୍ ବ୍ୟବଧାନରେ ଉଭୟ ପାର୍ଶ୍ୱରେ କଳା ପ୍ରସ୍ତର ନିର୍ମିତ ଦୁଇଟି ପ୍ରୋଜେକ୍ସନ ଆଗକୁ ବାହାରି ପଡ଼ିଛି । ଦୁର୍ଗ ମଧ୍ୟରେ ରାଣୀମହଲ ନିକଟରେ ଗୋଟିଏ ମନ୍ଦିର ଚିହ୍ନ ଦେଖିବାକୁ ମିଳେ । ମନ୍ଦିର ବୋଲି ଜାଣିବାର ତାତ୍ପର୍ଯ୍ୟ ଏହି ଯେ ଶିବ ମନ୍ଦିର ବା ବିଷ୍ଣୁ ମନ୍ଦିରର ଦ୍ୱାରଦେଶରେ ଦୁଆର ବନ୍ଧ ଉପରେ ସଂଯୋଗ ହୋଇଥିବା ୫'x୧', ୧'x୧' ମୋଟାର କେତେ ମହଣ ଓଜନ ବିଶିଷ୍ଟ ଏକ କୁନ୍ଦାପଥର ଦୁର୍ଗ ଭାଙ୍ଗିବା କାଳରୁ ପଡ଼ିରହିଛି । ପୁନଃ ଦୁର୍ଗ ମଧ୍ୟସ୍ଥ ଗଭୀର ପୁଷ୍କରିଣୀ ନିକଟରେ ସେହିପରି ଏକ ଗୃହର ଭଗ୍ନାବଶେଷ ଦେଖିବାକୁ ମିଳେ । ସେଠାରେ ଚାରିଖଣ୍ଡ କଳାପଥର (୬'x୧', x୧') ପଡ଼ିରହିଛି ।

ଖୋର୍ଦ୍ଧାଦୁର୍ଗ ଦ୍ୱିତଳ ବିଶିଷ୍ଟ ଥିଲା ବୋଲି ଦିଗମ୍ବର ଶ୍ରୀଚନ୍ଦନଙ୍କ ଲିଖିତ 'ଖୁରଧା ଦର୍ପଣ'ରୁ ଜଣାପଡେ । ଖୋର୍ଦ୍ଧା ରାଜ୍ୟକୁ ଲାଗି ବାଙ୍କି, ଡମପଡ଼ା ରାଜ୍ୟ ଥିଲା । ବାଙ୍କୀ ରାଜ୍ୟରୁ ବହୁ ପାଣ ଡକାୟତ ଖୋର୍ଦ୍ଧା ରାଜ୍ୟରେ ପଶି ଲୁଟତରାଜ ଆରମ୍ଭ କଲେ । ସେମାନଙ୍କୁ

ନିବୃତ୍ତ କରିବା ପାଇଁ ମହାରାଜା ବାଙ୍କୀ ରାଜା ଶ୍ରୀଚନ୍ଦନଙ୍କ ନିକଟକୁ ସମ୍ବାଦ ପ୍ରେରଣ କଲେ। ମାତ୍ର ବାଙ୍କୀ ରାଜା ଶ୍ରୀଚନ୍ଦନ କର୍ତ୍ତୃପାତ ନକରିବାରୁ ଖୋର୍ଦ୍ଧା ରାଜାଙ୍କର ରାଗ ରହିଲା ଏବଂ ବାଙ୍କୀ ସହ ଯୁଦ୍ଧ କରିବା ପାଇଁ ଇଚ୍ଛାପୋଷଣ କଲେ। ଦିନେ ମହାରାଜା ଦୋତାଲା କୋଠା ଉପରେ ପଦଚାଳନା କରୁକରୁ ହଠାତ୍ ପ୍ରତିହାରୀକୁ ପଚାରିଲେ, "ଏ କେଉଁ ପାହାଡ଼ ଦିଶୁଚି ?' ପ୍ରତିହାରୀ ଉତ୍ତର ଦେଲା, 'ମଣିମା, ବାଙ୍କୀ ମହାପର୍ବତ ।' ମହାରାଜାଙ୍କ ପୂର୍ବ କଥା ମନେପଡ଼ିଲା । ସେ କ୍ରୋଧ ସମ୍ବରଣ କରିନପାରି ସାଙ୍ଗେସାଙ୍ଗେ ଉତ୍ତର ଦେଲେ, 'ସୈନ୍ୟ ସଜାଅ ।' ବକ୍ସିଙ୍କୁ ତତ୍‌କ୍ଷଣାତ୍ ସମ୍ବାଦ ଦିଆଗଲା ଯେ, ବାଙ୍କୀ ସହ ଯୁଦ୍ଧ କରିବା ପାଇଁ (ଖୁରଧା ଦର୍ପଣ) । ଏଥିରୁ ଜଣାପଡ଼େ ଯେ ଖୋର୍ଦ୍ଧା ଦୁର୍ଗ ଦ୍ୱିତଳ ପ୍ରାସାଦ ବିଶିଷ୍ଟ ଥିଲା ।(୫)

"ଗଜପତି ବୀରକେଶରୀ ଦେବଙ୍କ ପରେ ତାଙ୍କ ନାତି (ପୁଅର ପୁଅ) ଦିବ୍ୟସିଂହ ଦେବ (୨ୟ) (୧୭୯୩-୧୯୯୮) ସିଂହାସନରେ ବସିଲେ । ବର୍ତ୍ତମାନ ବରୁଣେଇ ତଳେ ଗଡ଼ ଖୋର୍ଦ୍ଧାଠାରେ ଯେଉଁ ନଅରର ଭଗ୍ନାବଶେଷ ଦେଖାଯାଏ ତା'ର ସେ ପ୍ରତିଷ୍ଠାତା ଥିଲେ ।" (୬)

ଖୋର୍ଦ୍ଧାର ଏହି ଭଗ୍ନ ଗଡ଼ ଉପରେ ଦୁର୍ଗାଚରଣ ପଣ୍ଡା ଓ ମୁରଲୀଧର ପ୍ରଧାନଙ୍କ ପ୍ରତ୍ନତାତ୍ତ୍ୱିକ ବିବରଣୀ ପୂର୍ବରୁ ବର୍ଣ୍ଣିତ ହୋଇଛି। ଖୋର୍ଦ୍ଧାର ପ୍ରଥମ ରାଜା ଗଜପତି ରାମଚନ୍ଦ୍ର ଦେବ ଖୋର୍ଦ୍ଧାରେ ଯେଉଁ ଗଡ଼ ସ୍ଥାପନ କରିଥିଲେ ଏହା ସେହି ଗଡ଼ ନୁହେଁ । ସେ ଗଡ଼କୁ 'ଜଗନ୍ନାଥପୁର କଟକ' କୁହାଯାଉଥିଲା । ତା'ର ଅବସ୍ଥିତି ବର୍ତ୍ତମାନର ବାଟମଙ୍ଗଳା ମନ୍ଦିର କିଛି ଦୂର ପୂର୍ବ ଦିଗରୁ ଗଡ଼କୁ ଜଗନ୍ନାଥପୁର କଟକ କୁହାଯାଉଥିଲା । ତା'ର ଅବସ୍ଥିତି ବର୍ତ୍ତମାନର ବାଟମଙ୍ଗଳା ମନ୍ଦିରର କିଛି ଦୂର ପୂର୍ବଦିଗରୁ ଗଡ଼ ଦ୍ୱାର ସାହି ପର୍ଯ୍ୟନ୍ତ ଲମ୍ବିଥିଲା। ଏହି ପୁରାତନ ନଅର ସମ୍ପୂର୍ଣ୍ଣ ବିଲୁପ୍ତ । ଏହାର ପୂର୍ବଭାଗ ଅର୍ଥାତ୍ ସିଂହଦ୍ୱାର ସମ୍ମୁଖରେ ଯେଉଁ ପ୍ରାନ୍ତର ଥିଲା ତାହା ସରକାରୀ ଖାତାକୁ ଚାଲିଯାଇଥିବାରୁ ସେଠାରେ ଗଡ଼ଦ୍ୱାର ସାହିର ଲୋକମାନେ ଘରଦ୍ୱାର କରି ରହୁଛନ୍ତି । ଏହି ନଅରରେ ଗଜପତି ରାମଚନ୍ଦ୍ର ଦେବ (୧୫୬୮-୧୬୦୦), ଗଜପତି ପୁରୁଷୋତ୍ତମ ଦେବ (୧୬୦୦-୧୬୨୧), ଗଜପତି ନରସିଂହ ଦେବ (୧୬୨୧-୧୬୪୭), ଗଜପତି ଗଙ୍ଗାଧର ଦେବ (୧୬୪୭ରୁ ୧୬୪୮), ଗଜପତି ବଳଭଦ୍ର ଦେବ (୧୬୪୮ରୁ ୧୬୫୭), ଗଜପତି ମୁକୁନ୍ଦ ଦେବ (୧) (୧୬୫୭ରୁ ୧୬୮୯), ଗଜପତି ଦିବ୍ୟସିଂହ ଦେବ (୧୬୮୯ରୁ ୧୭୧୬), ଗଜପତି ହରେକୃଷ୍ଣ ଦେବ (୧୬୧୭ରୁ ୧୭୨୦), ଗଜପତି ଗୋପୀନାଥ ଦେବ (୧୭୨୦ରୁ ୧୭୨୭), ଗଜପତି ରାମଚନ୍ଦ୍ର ଦେବ (୨ୟ) (୧୭୨୭ରୁ ୧୭୩୭), ଗଜପତି ବୀରକେଶରୀ ଦେବ (୧୭୩୭ରୁ ୧୭୯୩) ପ୍ରମୁଖ ଅବସ୍ଥାନ କରିଥିଲେ । ମୋଗଲ ଆକ୍ରମଣ ଭୟରେ ଗଡ଼ମାଣତୀର, ରଥୀପୁର ଗଡ଼ ଓ ଗଡ଼

ବଳଭଦ୍ରପୁର ସାମୟିକ ଭାବେ ଗଜପତି ରାଜାଙ୍କର ବାସସ୍ଥାନ ଥିଲା । ସାମୟିକ ଭାବେ ବରପଦା ଗଡ଼, କୁଶପଲ୍ଲୀ ଓ ମାଣିବନ୍ଧ ଗଡ଼ରେ ମଧ୍ୟ ରହୁଥିଲେ । ପ୍ରଥମ ରାଜା ଗଜପତି ରାମଚନ୍ଦ୍ର ଦେବ ଏହି ମାଟି ନିର୍ମିତ ଗଡ଼ ନିର୍ମାଣ ପୂର୍ବରୁ ପ୍ରଥମେ କିଛି ବର୍ଷ କଦଳୀବାଡ଼ି ନାଉଁସିଂଠାରେ ଅବସ୍ଥାନ କରିଥିଲେ । ସେଠାରେ ଯେଉଁ ସ୍ଥାନରେ ରହୁଥିଲେ ତାହା ପୁରୁଣାଗଡ଼ କୁହାଯାଏ । ହାବେଳୀ ପୋଖରୀ ପାଖରେ ରାଣୀଙ୍କ ନଅର ଥିଲା । ଏହି ଗଡ଼ ଜଗନ୍ନାଥପୁର କଟକ ରୂପେ ପରିଚିତ । ଏହା ନିକଟରେ ଜଗନ୍ନାଥପୁର ନାମରେ ଏକ ମୌଜା ମଧ୍ୟ ଅଛି । ସୂଚନାଯୋଗ୍ୟ ଯେ ଗଜପତି ରାମଚନ୍ଦ୍ର ଦେବଙ୍କ ଦ୍ୱାରା ସ୍ଥାପିତ 'ଜଗନ୍ନାଥପୁର କଟକ' ସହିତ ଶ୍ରୀଜଗନ୍ନାଥଙ୍କ ଐତିହ୍ୟ ଓ ଇତିହାସର ବହୁ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଜଡ଼ିତ । ମାଦଳାପାଞ୍ଜି, ଚକଡ଼ାପୋଥି ଓ ଅନ୍ୟାନ୍ୟ ଐତିହାସିକ ଉପାଦାନରୁ ସୂଚିତ ଯେ ଗଜପତି ରାମଚନ୍ଦ୍ର ଦେବ କୁଜଙ୍ଗଗଡ଼ରୁ ବ୍ରହ୍ମ ଅଣାଇବା ପରେ ଏହି ଗଡ଼ ମଧ୍ୟରେ ନୂତନ ବିଗ୍ରହ (ଚତୁର୍ଦ୍ଧା ମୂର୍ତ୍ତି) ନିର୍ମାଣ କରାଇ, ସେମାନଙ୍କୁ ବିଧିମତେ ପୁରୀ ଶ୍ରୀମନ୍ଦିରରେ ପ୍ରତିଷ୍ଠା କରାଇଥିଲେ । ସେହି ପୁଣ୍ୟ ଦିନଟି ଥିଲା ରାମଚନ୍ଦ୍ର ଦେବଙ୍କ ଦଶମ ଅଙ୍କର ଶ୍ରାବଣ ଶୁକ୍ଳ ସପ୍ତମୀ ତିଥି ଇଂରାଜୀ ୧୫୭୫ ମସିହା ଜୁଲାଇ ୧୭ ତାରିଖ । କବି ଡ. କୁଞ୍ଜବିହାରୀ ମହାନ୍ତି ଲେଖିଛନ୍ତି-

"ଏବେଳେ ରାଜ ରାମଚନ୍ଦ୍ର ଦେବ
ଭକତିରେ ହୋଇ ଭୋଳ
ଶ୍ରୀମନ୍ଦିରେ ପୁଣି ଉତ୍କଳ ଦେବତା
ସ୍ଥାପନେ ମନ ଚଂଚଳ ।
ବୀର ରାମଚନ୍ଦ୍ର ସାହିତ୍ୟାନୁରାଗୀ
ରାଜ ପରିଷଦେ ଯା'ର
ଶୋଭା ମଣ୍ଡିଥିଲେ ପଣ୍ଡିତ ପ୍ରବର
ଏକୁ ଏକ ବଳିଆର ।
ହେ ଯଶସ୍ୱୀ ବୀର ଖୋର୍ଦ୍ଧା ରାଜବଂଶ
ସ୍ଥାପନେ ହୋଇ ଅଗ୍ରଣୀ
ଯୁଗେ ଯୁଗେ ତୁମ ଗୁଣ ଓ କୀରତି
ଘୋଷୁଥିବ ଏ ଧରଣୀ ।"(୭)

ଖୋର୍ଦ୍ଧାରେ ପ୍ରତିଷ୍ଠା ଲାଭ କରିଥିବା ଦୁଇଟି ଦୁର୍ଗ ମଧ୍ୟରୁ ପ୍ରଥମ ଦୁର୍ଗ (ଜଗନ୍ନାଥପୁର କଟକ) ସଂପୂର୍ଣ୍ଣ ବିଲୁପ୍ତ ହୋଇଛି । ସମ୍ଭବିତଃ ଏହା ୧୫୭୧-୭୨ରେ ନିର୍ମିତ ହୋଇଥିଲା । ଦ୍ୱିତୀୟ ଦୁର୍ଗଟି ବରୁଣେଇ ପାଦଦେଶରେ ଖୋର୍ଦ୍ଧାଗଡ଼ଠାରେ ୨ୟ ଦିବ୍ୟସିଂହ ଦେବଙ୍କ (ବୀରକେଶରୀ ଦେବଙ୍କ ଜ୍ୟେଷ୍ଠ ପୁତ୍ର ଜଗନ୍ନାଥ ରାୟଙ୍କ ପୁତ୍ର)ଙ୍କ ଦ୍ୱାରା ନିର୍ମିତ

ହୋଇଥିଲା । ସମ୍ଭବତଃ ଏହା ୧୭୯୦ ମସିହା ପୂର୍ବରୁ ନିର୍ମିତ ହୋଇଥିଲା। ଏହି ଗଡ଼ର ସୁରକ୍ଷା ପାଇଁ ବୋରଝରେ ପୋଖରୀ ନିକଟରେ ମାଟିର ଉଚ୍ଚ କୁଦମାନ କରାଯାଇ ଶତ୍ରୁ ଆଗମନକୁ ନିରୀକ୍ଷଣ ନିମନ୍ତେ ପ୍ରହରୀ ବ୍ୟବସ୍ଥା ହୋଇଥିଲା । ଏହି ଉଚ୍ଚଦ୍ରୁମକୁ ୨୦୧୪ ମସିହାରେ ଜଣେ ବିଲଡର ଜାଗା ସମତଳ କରି ପ୍ଲଟିଙ୍ଗ କରି ବିକ୍ରି କରିଦେଇଛନ୍ତି । ଇଂରେଜମାନେ କେବଳ ଖୋର୍ଦ୍ଧାଗଡ଼ ନୁହେଁ ସାତତଳ ବିଶିଷ୍ଟ ବାରବାଟୀ ଦୁର୍ଗକୁ ଭାଙ୍ଗି ଦେଇଥିଲେ । ଏହାହିଁ ପରିତାପର ବିଷୟ । ଏହି ଭଗ୍ନଗଡ଼କୁ ଦେଖି ସେହି ଦୁଃସ୍ଥିତିକୁ ଲକ୍ଷ୍ୟକରି ବ୍ୟଙ୍ଗ କବି ଗୋଦାବରୀଶ ମହାପାତ୍ର ଯେଉଁ ବେଦନା ଅନୁଭବ କରିଥିଲେ, ତାହାକୁ ଏକ ମର୍ମସ୍ପର୍ଶୀ କବିତାର ରୂପ ଦେଇ ଏକ ଉଦ୍‌ବୋଧନୀ ଗୀତ ୧୯୩୦ ମସିହାରେ ଲେଖିଥିଲେ। ତାହା ଥିଲା ଏହିପରି-

"ଦୁର୍ଗମ ଗିରି ଦୁର୍ଗ ପ୍ରାଚୀର
ଜୀର୍ଣ୍ଣ ଦୁଆରେ ବସି
ଡାକେ ତାନ୍ତ୍ରିକ ମନ୍ତ୍ର ସାଧନେ ଜାଗ୍ରତ ପୁରବାସୀ ।
ପୃଥୀ ବିଦାରି ବୀରମାଟି
ମଡ଼ା ଉଠଉଠ ଚଞ୍ଚଳ
ଖୋରଧାର ଶତ ସରଦାର
ଶିର କର ଉନ୍ନତ ତର ।
ଉଠ କଙ୍କାଳ, ଛିଡୁ ଶୃଙ୍ଖଳ,
ଜାଗ ଦୁର୍ବଳ ଆଜି
ଉଠୁ ଗଡ଼ ଗଉରବ, ହୃତ
ଗଉରବ, ମୃତ ଗଉରବ ରାଜି ।"

ଏଥିରେ ସେଇ ଓଡ଼ିଶାର ସଂକ୍ଷିପ୍ତ ଇତିହାସ ବର୍ଣ୍ଣିତ- ଯେଉଁ ଓଡ଼ିଶା ଦିନେ ଥିଲା ଦୁର୍ବାର, ଦୁର୍ମଦ। 'ଉଠ କଙ୍କାଳ'- ଭାବରେ ପ୍ରସିଦ୍ଧ ହେଲେ ହେଁ ଏ ଗୀତଟିର ଶୀର୍ଷକ ଥିଲା 'ଶ୍ମଶାନ ପୂଜାରୀର ଆହ୍ୱାନ' । କିନ୍ତୁ ପ୍ରଶ୍ନ ଉଠେ- ଦୁର୍ଗମ ଗିରି ଦୁର୍ଗର ଜୀର୍ଣ୍ଣ ପ୍ରାଚୀର ଓ ଜୀର୍ଣ୍ଣ ଦୁଆରେ ବସି ଶ୍ମଶାନ ପୂଜାରୀ ଆହ୍ୱାନ ଦେବା ସତ୍ତ୍ୱେ, କଙ୍କାଳମାନେ ଏଯାଏଁ ଉଠିଲେଣି କି? ଦୁର୍ବଳମାନେ ଏଯାଏଁ ଜାଗିଲେଣି କି? ସେମାନଙ୍କର ଶୃଙ୍ଖଳ ସବୁ ଛିଡ଼ିଗଲାଣି କି? ଆମର ଗତ, ହୃତ ଓ ମୃତ ଗଉରବ ରାଜି ଅଭ୍ୟୁଦିତ ହେଲାଣି କି? ମନେହୁଏ- ୧୮୧୭ ପାଇକ ବିଦ୍ରୋହର ଦ୍ୱିଶତ ବାର୍ଷିକୀ ପରେ ମଧ୍ୟ ଏମନ୍ତ ଦୁର୍ଗତି ଏ ଜାତିର କପାଳରୁ ହଟିବା ତ ଦୂରର କଥା, ଦୁର୍ଗତିର ଗତି ଆଜି ଆହୁରି ଦ୍ରୁତ ହୋଇଛି । ଆହୁରି ଜୀର୍ଣ୍ଣ ହୋଇଛି ଗିରି ଦୁର୍ଗର ପ୍ରତ୍ନ-ପ୍ରାଚୀର ।

ସେଦିନ ସେଇ କବିତାରେ ଓଡ଼ିଶାର ଅନେକଗୁଡ଼ିଏ ଦୁର୍ଗର ନାମୋଲ୍ଲେଖ କରିଥିଲେ ଗୋଦାବରୀଶ ମହାପାତ୍ର । ବଖାଣିଥିଲେ, ସେହି ଦୁର୍ଗଗୁଡ଼ିକ ସହିତ ଜଡ଼ିତ ଥିବା ଏ ମହାନ୍ ଜାତିର ଗୌରବ ଗାଥା । ବଖାଣିଥିଲେ ବି ଫୁଲଝରର ଓ ରାଇବଣିଆର ରଣସଙ୍ଗୀତ ଓ ସମ୍ବଲପୁରର ସମ୍ବଲବୀରଙ୍କ କଥା । କଳବର୍ଗର ଅର୍ଗଳ ଏଡି ଗଜପତି ବୀର 'ବେରାର' ଭେଦିବା କଥା । ଆମକୁ ସ୍ମରଣ ବି କରାଇ ଦେଇଥିଲେ ଦୁର୍ବାର ଗଡ଼ ଦେବରକୋଣ୍ଡାର କଥା । ଖଣ୍ଡାକୁଶଳ ଖଣ୍ଡାୟତଙ୍କ ଦୁର୍ବାର କରବାଳରେ ଶତଗଡ଼ରେ ଅଜେୟ ବଙ୍ଗବାହିନୀ ପରାଭୂତ ହେବାର କଥା ।

ସେଦିନ ଓଡ଼ିଶାର ସେହି ବୀର ପାଇକମାନଙ୍କ ଦ୍ୱାରା ମଗଧ ଲୀନ ହୋଇଥିଲା । ଗଉଡ଼ ଭୂବନ ହୋଇଥିଲା ପଦାନତ । ବିଜୟୀ ବିଜୟନଗର ଓଡ଼ିଶାର ଚରଣ ତଳେ ଶରଣ ମାଗିଥିଲା । ବାହମନିପତି ଯବନ, ଶମନ ଭୟରେ ଲୁଚିଥିଲା ।

ଗୋଦାବରୀଶ ଗଭୀର କ୍ଷୋଭର ସହ ଲେଖିଛନ୍ତି-

"ଗଙ୍ଗା ଧୋଇଲା ଚିକୁର
ଯାହାର କୃଷ୍ଣା ଚରଣ ତଳ
ଶମଶାନ ଆଜି, ମଡ଼ା ଦେଶ
ଆଜି ଏହି ସେ ଉତ୍କଳ ।"

ଏହା କହିବା ସହିତ, ସେ ଆଶାପୋଷଣ କରିଛନ୍ତି-
'ହାଡ଼ ପାଶୁ ଆଜି ଭାଷା ବହି ଆସୁ, ଫୁଟୁ ମଡ଼ାମୁଖେ ହସ,
ଭଗ୍ନ ଏ ଗଡ଼ ମନ୍ଦିରେ ଶୁଭୁ,
ଦୁନ୍ଦୁଭି ଅହର୍ନିଶ ।
ଶମଶାନ ଧୂଳି ଅଞ୍ଜଳି ଭରି
ନିଅ ପୁରବାସୀ ଜନ,
ଲକ୍ଷ ଜୀବନ ସାକ୍ଷ୍ୟ ଦେବ ସେ ଗଉରବେ ମହୀୟାନ ।'

ଅନ୍ତତଃ ଏତିକି ଆଶାପୋଷଣ କରିବା- ଗୋଦାବରୀଶଙ୍କ ଉଦ୍ଦାମ ଉଦ୍‌ବୋଧନୀରେ ଯାହା ହେଲା ନାହିଁ, ହୁଏତ ଏହି ଦ୍ୱିଶତ ବାର୍ଷିକୀ ପାଳନ ପରେ କାଳେ ତାହା ହୋଇପାରେ ! (୮)

ଖୋର୍ଦ୍ଧାଗଡ଼ର ଦୁରବସ୍ଥା ଓ ପାଇକ ଦାୟାଦମାନଙ୍କର ନିରବତାକୁ ଲକ୍ଷ୍ୟ କରି ବିଶିଷ୍ଟ ନାରୀନେତ୍ରୀ ତଥା କବୟିତ୍ରୀ ସ୍ୱର୍ଗତ ଶାନ୍ତି ଦାସ ଲେଖିଛନ୍ତି-

'ମୁର୍ଦ୍ଦାର ମାଟି ରକ୍ତ ଶୁଖୁଛି
ପଥର ହୋଇଛି ଅଶ୍ରୁକଣା
ଖୋର୍ଦ୍ଧାର ବୀର ପାଇକ ଶୋଇଛି
ଭାଙ୍ଗିଯାଇଛି ବିଜୟ ବୀଣା ।
ରଣହୁଙ୍କାର ଦର୍ପ ହଜିଛି
ଗୌରବହୀନ ଶୂନ୍ୟ ଦେହୀ
ସ୍ୱାଭିମାନ ଶିରୀ ସ୍ୱର୍ଣ୍ଣମୁକୁଟ
ଖୋର୍ଦ୍ଧାରେ ଆଉ ପାଇବ କାହିଁ ?
ଉଠ କୃତ୍ତିବାସ, ବଙ୍କି, ମାଧବ
ସୁପ୍ତ ପରାଣେ ଶକ୍ତି ଦିଅ
ଲୁପ୍ତ ଗରିମା ଅଣ୍ଡାଳି ଖୋଜୁ
ଖୋର୍ଦ୍ଧାର ବୀର ପାଇକ ପୁଅ ।
ମା' ବରୁଣେଇ ସିଂହବାହିନୀ
ରଣହୁଙ୍କାର ଧ୍ୱନି ଦିଅ
ପଙ୍ଗୁ ପୁରୁଷ ବିଷର୍ଣ୍ଣ ଦେହେ
ପୁନଶ୍ଚ ଖେଳୁ ରକ୍ତ ଲାର୍ଭା
କାଳ ମହାକାଳ ଭୈରବ ଉଠୁ
ଉଦ୍‌ବେଳି ଉଠୁ ସ୍ୱର୍ଣ୍ଣଆଭା ।
ଅସ୍ଥିର-ସ୍ଥିର ସ୍ଥାବର ଶୈଳୁ
ଶଙ୍ଖ କାହାଳୀ ବଂଶୀ ବାଜୁ
ଧ୍ୱଂସ ଗଡ଼ର ଗଡ଼ଖାଇ ତଳୁ
ହୀନମନ୍ୟତାର ଶବ୍ଦ ହଜୁ ।
ଅଥର୍ବ ହୁଅ ଚଳଚଞ୍ଚଳ
ଲମ୍ଫ ଦିଅରେ ସୁପ୍ତ ପଙ୍ଗୁ
ସ୍ଥବିର ଆର୍ତ୍ତ ଜଡ଼ ଭରତର
ତନ୍ଦ୍ରା ଜଡ଼ିତ ସ୍ୱପ୍ନ ଭାଙ୍ଗୁ ।
ମହାଯୋଦ୍ଧାର ଦାୟାଦ ଉଠରେ
ସର୍ଦ୍ଦାର ଗତ କୀର୍ତ୍ତି ହେଜ,
ଦିବ୍ୟ ଜୀବନ ନଷ୍ଟ କରନା
ସୁପ୍ତ ମାଟିର ବାସ୍ନା ଖୋଜ ।
କୋଟି ପାଇକର ଶବ ମର୍ମରେ

ଚିତ୍କାର କରେ ଶୂନ୍ୟ ଅସ୍ଥି
ମା' ବରୁଣେଇ ବନ୍ଧା ହୋଇନି
ମରିନି ଲଢୁଆ ପାଇକ ଜାତି ।
ବରୁଣେଇ କୋଳ ସିଂହ ଶାବକ
ପୁନଶ୍ଚ ଥରେ ମୁଣ୍ଡ ଟେକ
ଶୌର୍ଯ୍ୟ ବୀର୍ଯ୍ୟ ପରମ୍ପରାର
ଐଶ୍ୱର୍ଯ୍ୟର ଗର୍ବ ରଖ ।
ମା' ବରୁଣେଇ କରୁଣା ବିନ୍ଦୁ
ଆଶିଷ ବର୍ଷା ସିନ୍ଧୁ ଜଳେ
ସ୍ଥାଣୁ ପରବତ ଜାଗୃତି ନେଇ
ମାତୃ ମମତା ଆଶିଷ ତଳେ ।
ଚନ୍ଦନ କର ଯୋଦ୍ଧା ପାଉଁଶ
ମାତୃ ମହତ ଗରିମା ରଖ
ଖଣ୍ଡା ଉଠାଅ ଝଣ୍ଡା ଉଠାଅ
ପୁନଶ୍ଚ ତଳେ ମୁଣ୍ଡ ଟେକ । (୯)

କବିୟିତ୍ରୀ ଶାନ୍ତି ଦାସ ତାଙ୍କର ଏହି କବିତାରେ ଓଡ଼ିଆ ଜାତି ସୁପ୍ତ ନରହି ଜାଗ୍ରତ ହେବାକୁ ଆହ୍ୱାନ ଦେଇଛନ୍ତି । ଇଂରେଜମାନଙ୍କ ଦ୍ୱାରା ଗଡ଼ ଧ୍ୱଂସ ହେଲା । 'ଏଇଠି ପ୍ରଶ୍ନ ଉଠେ ଇଂରେଜମାନେ ଏତେବଡ଼ ସୁଦୃଢ଼ ଦୁର୍ଗକୁ ମୂଳପୋଛ କରିଦେଲେ କାହିଁକି ? ସେହି ଦୁର୍ଗକୁ ସେମାନେ ଖୋର୍ଦ୍ଧା ଉପଖଣ୍ଡର ସଦର ମହକୁମା କରିପାରିଥାନ୍ତେ, କିମ୍ବା ଅନ୍ୟ କୌଣସି କାର୍ଯ୍ୟରେ ବିନିଯୋଗ କରିପାରି ଥାଆନ୍ତେ ! ମାତ୍ର ଗୋଟାଏ ପ୍ରାଚୀନ ଦୁର୍ଗକୁ ଧ୍ୱଂସ କରିବାର ଅଭିପ୍ରାୟ କଅଣ ? ଏଇ ପରିପ୍ରେକ୍ଷୀରେ ଆମ୍ଭେମାନେ ଓଡ଼ିଶାର ଗୌରବକେତନ ବାରବାଟୀ ଦୁର୍ଗ ଉପରେ କିଂଚିତ ଆଲୋକପାତ କରିବା ଉଚିତ୍ ମନେହୁଏ । ବାରବାଟୀ ଦୁର୍ଗ ଓଡ଼ିଆ ସ୍ୱାଭିମାନର ଏକ ମୂର୍ତ୍ତିମନ୍ତ ପ୍ରତୀକ ଥିଲା । ତାହା ଧ୍ୱଂସ କରିବାରେ କି ରହସ୍ୟ ଥିଲା ?

ସେତେବେଳେ ଆମ ଲୋକମାନେ ଏକବାର ଅଜ୍ଞ ଥିଲେ । ସେମାନଙ୍କର ବିଦ୍ରୋହାତ୍ମକ ମନୋଭାବ ହେତୁ ବ୍ରିଟିଶ ସରକାର ତୋପ କମାଣରେ ସେମାନଙ୍କୁ ତଳିତଳାନ୍ତ କରିଦେଲେ । ଅନ୍ୟ ପ୍ରଦେଶର ସରକାରୀ କର୍ମଚାରୀମାନଙ୍କ ଦ୍ୱାରା ଓଡ଼ିଶାରେ ଦମନଲୀଳା ଚଳାଇଲେ । କେତେକ ଦେଶଦ୍ରୋହୀ ନିମକହାରାମ ଲୋକେ ଭୟରେ ହେଉ ବା କିଛି ପାଇବା ଆଶାରେ ହେଉ ସେମାନଙ୍କୁ ସାହାଯ୍ୟ କରିଦେଲେ । ୧୮୨୮ ମସିହାରେ ମିଃ ପାକେନହାମ ଓଡ଼ିଶାର କମିଶନର ଥିବା ସମୟରେ ଐତିହ୍ୟ ବିମଣ୍ଡିତ

ବାରବାଟୀ ଦୁର୍ଗର ପ୍ରସ୍ତରଗୁଡ଼ିକ ବିକ୍ରୟ କରିଦେବା ପାଇଁ ଭାରତ ମିଲିଟାରୀ ବୋର୍ଡର ଅନୁମତି ମାଗିଲେ । ଭାରତର ତତ୍କାଳୀନ ବଡ଼ଲାଟ ମିଲିଟାରୀ ବୋର୍ଡର ନିଷ୍ପତ୍ତିକୁ ମଞ୍ଜୁର କଲେ । ସେତେବେଳେ ଫଲସ୍ ପଏଂଟ୍ସ୍ଥ ବତିଘର ପାଇଁ ଓ କାଠଯୋଡ଼ି ପଥରବନ୍ଧ ମରାମତି ପାଇଁ ପଥର ଆବଶ୍ୟକ ପଡ଼ିଲା । ପୁନଃ କଟକ ସହରର କେତେକ ଧନୀଲୋକ ଶହ ପାଞ୍ଚଟଙ୍କା ଦରରେ ପଥର କ୍ରୟ କଲେ । ତେଣୁ ବାରବାଟୀ ଦୁର୍ଗର ଏପରି ଦୀନହୀନ ଅବସ୍ଥା ହେଲା । (ପ୍ରଭାତ ମୁଖାର୍ଜୀଙ୍କ ପ୍ରବନ୍ଧ- ଉତ୍କଳ ପ୍ରସଙ୍ଗରେ ପ୍ରକାଶିତ)

ଏ ଯେପରି ସିଦ୍ଧାନ୍ତ ହେଲା ଖୋର୍ଦ୍ଧା ଦୁର୍ଗକୁ ଭାଙ୍ଗିବା ପାଇଁ ସେହି ସିଦ୍ଧାନ୍ତ ନିଆଯାଇଥିଲା । ୧୮୩୮ ମସିହାରେ ଖୋର୍ଦ୍ଧା ସବ୍ ଡିଭିଜନ ଅଫିସ୍ ନିର୍ମାଣ କରାଗଲା । ତତ୍କାଳୀନ ଓଡ଼ିଆ ସବ୍‌ଡିଭିଜନନାଲ ଅଫିସର ରାୟ ବାହାଦୁର ମଧୁସୂଦନ ପଟ୍ଟନାୟକ ନିର୍ମାଣ ଦାୟିତ୍ୱରେ ରହିଲେ । ଖୋର୍ଦ୍ଧା ଦୁର୍ଗର ପ୍ରସ୍ତର ଖଣ୍ଡ ଏସ୍‌ଡିଓ ଅଫିସ ନିର୍ମାଣ କାର୍ଯ୍ୟରେ ଲାଗିଥିଲା । ଏହା ବ୍ୟତୀତ ଖୋର୍ଦ୍ଧା ନିକଟବର୍ତ୍ତୀ ଏକ ପ୍ରସିଦ୍ଧ ଗ୍ରାମରେ ଗୋପୀନାଥ ଦେବଙ୍କ ମନ୍ଦିର ନିର୍ମାଣ କାର୍ଯ୍ୟରେ ଏହି ପ୍ରସ୍ତରମାନ ବ୍ୟବହୃତ ହୋଇଛି । ବାରବାଟୀ ଦୁର୍ଗ ଭଳି ଖୋର୍ଦ୍ଧା ଦୁର୍ଗର ଧ୍ୱଂସସାଧନ ହେଲା ।

ଏଇଠି ପ୍ରଶ୍ନ ଉଠେ ଏ ପୁରାତନ କୀର୍ତ୍ତିରାଜିକୁ ବ୍ରିଟିଶ ସରକାର ଏପରି ଧ୍ୱଂସ ସାଧନ କଲେ କାହିଁକି ? ଏଠାରେ କେତୋଟି କାରଣ ଆଲୋଚନା କରାଯାଇପାରେ । ଗୋଟିଏ ହେଉଛି ପଥରଗୁଡ଼ିକୁ ବିକ୍ରି କରି କାମରେ ଲଗାଇବା, ଦ୍ୱିତୀୟ ହେଲା ଓଡ଼ିଆ ପାଇକମାନେ ଖୋର୍ଦ୍ଧା ପାଇକ ବିଦ୍ରୋହ ୧୮୧୭ରୁ ୧୮୨୫, ତାପଙ୍ଗ ବିଦ୍ରୋହ ଓ ବାଣପୁର ବିଦ୍ରୋହ ୧୮୩୬ରେ ପରିଚାଳନା କରି ବ୍ରିଟିଶ ସରକାରକୁ ପାଣି ପିଆଇଦେଲେ । ଏପରି ହରବରରେ ପଡ଼ିଲା ଯେ, ବ୍ରିଟିଶ ସରକାର ଓଡ଼ିଆ ପାଇକମାନଙ୍କର ମେରୁଦଣ୍ଡ ଭାଙ୍ଗି ଦେବା ପାଇଁ ବଦ୍ଧପରିକର ହେଲା । କାଳେ ଭବିଷ୍ୟତରେ ସେମାନଙ୍କର ବଂଶଧରମାନେ ଦୁର୍ଗକୁ ଦେଖି ପୂର୍ବଗୌରବ ଗାଥା ସ୍ମରଣ କରି ପୁନଃ ବ୍ରିଟିଶ ସରକାର ବିରୋଧରେ ଖଡ୍‌ଗ ଉତ୍ତୋଳନ କରିବେ, ଏହି ଭୟରେ ଇଂରେଜମାନେ ଦୁର୍ଗଗୁଡ଼ିକୁ ମୂଳଯୋଗ କରିଦେଲେ ବୋଲି ଅନୁମାନ କରାଯାଇପାରେ । (୧୦)

ଖୋର୍ଦ୍ଧାଗଡ଼ର ଆୟତନ ୨୦.୭୪ ଏକର ସରକାରୀ କାଗଜପତ୍ରରେ ଥିବାବେଳେ ବାସ୍ତବରେ ଏହା କମ୍ ଅଛି । ଜବରଦଖଲ ଯୋଗୁଁ ଏପରି କମ୍ ଥିବା ଜଣାପଡ଼େ । ପୁନଶ୍ଚ ଗଡ଼ର ବହୁ ପଥର ଲୋକେ ବିଭିନ୍ନ ଉପାୟରେ ନେଇଯାଇଥିବା ଜଣାପଡ଼େ । ଐତିହ୍ୟ ସୁରକ୍ଷା ପାଇଁ ବାସ୍ତବରେ ଧ୍ୟାନ ଦିଆଯାଉନାହିଁ । ପୁରୀରେ ୧୯୦୫ ମସିହାରେ କହ୍ନେୟାଲାଲ ବଗଲା ତୀର୍ଥାଟନ ଯାତ୍ରୀମାନଙ୍କ ସୁଲଭ ରହଣି ନିମନ୍ତେ ଦେଇଥିବା ବଗଲା ଧର୍ମଶାଳା ଯେତେବେଳେ ବିକ୍ରି ହୋଇପାରୁଛି, ସେତେବେଳେ ଐତିହ୍ୟ ସୁରକ୍ଷାକୁ ନେଇ

ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । କେବଳ ସରକାର ନୁହନ୍ତି ପ୍ରତ୍ୟେକ ସଚେତନ ନାଗରିକ ଐତିହ୍ୟ କୀର୍ତ୍ତିରାଜିର ସୁରକ୍ଷା ପାଇଁ ଆଗେଇ ଆସିବା ଉଚିତ୍ ।

ଖୋର୍ଦ୍ଧା ଗଡ଼ ଓ ବରୁଣେଇ ପର୍ବତ ବିଗତ ତିରିଶ ବର୍ଷ ମଧ୍ୟରେ ତିନୋଟି ଘଟଣାକୁ ନେଇ ଚର୍ଚ୍ଚାକୁ ଆସିଛି । ତାହା ହେଲା ୧୯୯୨ ମସିହା ଏପ୍ରିଲ ୧ ତାରିଖ (ଉତ୍କଳ ଦିବସ), ୧୯୯୮ ମସିହା ଜାନୁଆରୀ ୧ ତାରିଖରୁ ୭ ତାରିଖ ଏବଂ ୨୦୧୯ ଡିସେମ୍ବର ୮ ତାରିଖ ମାନ୍ୟବର ରାଷ୍ଟ୍ରପତି ରାମନାଥ କୋବିନ୍ଦଙ୍କ ବରୁଣାଇର ପାଦଦେଶରେ ପାଇକ ସ୍ମାରକୀ ଶିଳାନ୍ୟାସ ଉଦ୍‌ଘାଟନ । ୧୯୯୨ ମସିହା ବେଳକୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ବିଜୁ ପଟ୍ଟନାୟକ । ସେ ୧୯୯୦ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବା ପରଠାରୁ କଳିଙ୍ଗ ପାଇକ ସଂଗଠନ, ଉତ୍କଳ ବିକାଶ ପରିଷଦ, ଖଣ୍ଡାୟତ କ୍ଷତ୍ରିୟ ମହାସଭା ଆଦି ବହୁ ସଂଗଠନ ପକ୍ଷରୁ ବିଜୁ ପଟ୍ଟନାୟକଙ୍କ ପାଖରେ ଗଡ଼ର ବିକାଶ ପାଇଁ ଦୃଷ୍ଟି ଆକର୍ଷଣ କରାଯାଇଥିଲା । ବରିଷ୍ଠ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ଡ. ପ୍ରସନ୍ନ କୁମାର ପାଟଶାଣୀ, ବରିଷ୍ଠ ସାମ୍ବାଦିକ ରାଜକିଶୋର ରାମ, ଡ. ଦିଲୀପ ଶ୍ରୀଚନ୍ଦନ, ପ୍ୟାରୀମୋହନ ସାମନ୍ତରାୟ, ସମାଜସେବୀ ତଥା ସାମ୍ବାଦିକ ବିଶ୍ୱନାଥ ସାମନ୍ତ, ମଂତ୍ରୀ କାହ୍ନୁ ଚରଣ ଲେଙ୍କା ପ୍ରମୁଖ ଏହାର ନେତୃତ୍ୱ ନେଇଥିଲେ । ଫଳରେ ଖୋର୍ଦ୍ଧାଗଡ଼ ପରିଷ୍କାର ପରିଚ୍ଛନ୍ନ କରାଗଲା। କିଛି ଅଂଚଳର ପୁନରୁଦ୍ଧାର କରାଯାଇ ଭିତର କାନ୍ଥ ପାଚେରି କରାଗଲା । ଗଡ଼ ମଧ୍ୟରେ ସଭାମଣ୍ଡପ କରାଗଲା । ପୂର୍ବ ଗଡ଼ର ପୂର୍ବ ଦ୍ୱାର ଓ ଉତ୍ତର ଦ୍ୱାରକୁ ପ୍ରବେଶ ଦ୍ୱାର ରୂପେ ସଜ୍ଜିତ କରାଗଲା । ୧୯୯୨ ଏପ୍ରିଲ ୧ ତାରିଖରୁ ୫ ତାରିଖ ପର୍ଯ୍ୟନ୍ତ ୫ଦିନ ଧରି ପାଇକ ମହୋତ୍ସବ କରାଗଲା । ସାରା ରାଜ୍ୟରୁ ୧୪୨ଟି ପାଇକ ଆଖଡ଼ା ଦଳ ଏହି ରାଜ୍ୟସ୍ତରୀୟ ପାଇକ ମହୋତ୍ସବରେ ଅଂଶ ଗ୍ରହଣ କରିଥିଲେ । ପ୍ରଥମ ଉଦ୍‌ଘାଟନୀ ଦିବସରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ରାଜ୍ୟପାଳ ଯଜ୍ଞଦତ୍ତ ଶର୍ମା, ବରିଷ୍ଠ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ମନ୍ତ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ମନ୍ତ୍ରୀ ସୁରେନ୍ଦ୍ରନାଥ ନାୟକ ପ୍ରମୁଖ ଅତିଥି ଭାବେ ଯୋଗ ଦେଇଥିଲେ । ପାଞ୍ଚଦିନର କାର୍ଯ୍ୟକ୍ରମରେ ମନ୍ତ୍ରିମଣ୍ଡଳର ସମସ୍ତ ମନ୍ତ୍ରୀ ଅତିଥି ହୋଇଥିଲେ । ସାଂସଦ ରବି ରାୟ, ପଦ୍ମଚରଣ ସାମନ୍ତସିଂହାର ପ୍ରମୁଖ ଯୋଗ ଦେଇଥିଲେ । କ୍ରୀଡ଼ା ଓ ଯୁବ ବିଭାଗ ନିର୍ଦ୍ଦେଶକ ଆଇପିଏସ୍ ଅଫିସର ଅନାଦି ସାହୁ ଦଶଦିନ ପୂର୍ବରୁ ଖୋର୍ଦ୍ଧା ଡାକବଙ୍ଗଳାରେ ରହି କାର୍ଯ୍ୟକ୍ରମ ପ୍ରସ୍ତୁତିରେ ଲାଗିପଡ଼ିଥିଲେ । ଖୋର୍ଦ୍ଧାର ଏସ୍‌ଡିଓ ପ୍ରଫୁଲ୍ଲ କୁମାର ରାଉତରାୟ ପୂର୍ଣ୍ଣ ସହଯୋଗ ଦେଇଥିଲେ । ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳଙ୍କୁ ସମ୍ମାନ ଜଣାଇବା ପାଇଁ ଉଦ୍‌ଘାଟନୀ ଦିବସରେ ପୋଲିସ ବାହିନୀ ବରୁଣାଇ ପାହାଡ଼ ଉପରେ ଦଣ୍ଡାୟମାନ ହୋଇ ମଶାଲ ଧରି ସମ୍ବର୍ଦ୍ଧନା ଜଣାଇଥିଲେ । ଗଡ଼ମାଣତୀର ରାମଚଣ୍ଡୀଙ୍କ ପୀଠରୁ ପାଇକମାନେ ମଶାଲ ଧରି ଜ୍ୟୋତି ଆଣିବା ପରେ ଏଠାରେ ପ୍ରଜ୍ୱଳିତ ହୋଇଥିଲା । ଖୋର୍ଦ୍ଧା ଜିଲ୍ଲାର ଗଡ଼ମାଣତୀର, ବୋଲଗଡ଼, ବାଙ୍କୋଇ,

ସହଜପୁର, ବାଛରା, ୱିଲକିନସନ ନଗର, ଗଡ଼ ଖୋର୍ଦ୍ଧା, ଅସରଳା, ସାନପଦର, ଗୋଡ଼ିଆଳି, ଗଁପୁର, ପଙ୍ଗାରସିଂହ, ପୁରୀର ରେବଣା ନୂଆଗାଁ, ମାଲୁଦ ଦୋକନ୍ଦା, ବଡ଼ପୁଟ ଏବଂ ତାଳଚେର, ଢେଙ୍କାନାଳ ଓ ଅନୁଗଳ ଅଞ୍ଚଳରୁ ୧୪୨ଟି ଦଳ ଏଥିରେ ଯୋଗ ଦେଇଥିଲେ । ତାଳଚେରରୁ ଅଧ୍ୟାପିକା ସୌଭାଗିନୀ ଦାସଙ୍କ ନେତୃତ୍ୱରେ ଏକ ମହିଳା ଦଳ ଯୋଗ ଦେଇଥିଲେ । ଏହି ଦଳର ନାମ ଥିଲା 'ରାଣୀ ଶୁକଦେଇ ପାଇକ ବାହିନୀ' । ୱିଲକିନସନ ନଗରର ଗୁରୁ ଦୀନବନ୍ଧୁ ବିଶ୍ୱାଳ ଚମତ୍କାର କ୍ରୀଡ଼ା ନୈପୁଣ୍ୟ ପ୍ରଦର୍ଶନ କରିଥିଲେ । ସେହି ପାଞ୍ଚଦିନର ରାଜ୍ୟସ୍ତରୀୟ ପାଇକ ସମାରୋହ ଅତ୍ୟନ୍ତ ଆକର୍ଷଣୀୟ ଥିଲା, ଆଶା କରାଯାଉଥିଲା ଖୋର୍ଦ୍ଧାଗଡ଼ ଅର୍ଥାତ୍ ଭଗ୍ନ ଦୁର୍ଗର ପୁନରୁଦ୍ଧାର ହେବ ଯାହା ସାମ୍ବାଦିକ ବିଶ୍ୱନାଥ ସାମନ୍ତଙ୍କର ସ୍ୱପ୍ନ ଥିଲା । ବାସ୍ତବରେ ସେଭଳି କିଛି ହେଲା ନାହିଁ ।

ଖୋର୍ଦ୍ଧା ଦୁର୍ଗ ଏବେ ପ୍ରତ୍ନତତ୍ତ୍ୱ ବିଭାଗ ଅଧୀନକୁ ଚାଲିଯାଇଛି । ଏହାର ସୌନ୍ଦର୍ଯ୍ୟକରଣ ହେଉନାହିଁ କି ପରିଷ୍କାର ପରିଚ୍ଛନ୍ନ ହେଉନାହିଁ । କବି ଦିବାକର ପାଟଶାଣୀ ଏହି ଗଡ଼ର ରୂପରେଖ ନେଇ ସେ ଯାହା ଶୁଣିଥିଲେ ତାହା 'ସେହି ସେ ଜଜାରସିଂହ' କବିତାରେ ନିମ୍ନମତେ ଲେଖିଛନ୍ତି ।

'ପିତୃ-ସନ୍ନିଭଙ୍କ ବାକ୍ୟରେ ନରେନ୍ଦ୍ର
ତ୍ୱରିତେ ଦେଲେ ଆଦେଶ
ତୋଳିବାକୁ ସେହି ସ୍ଥାନେ ରାଜଗୃହ
ସହ ଗଡ଼ ଅଭ୍ରକକ୍ଷ ।
କିଛିଦିନ ଅନ୍ତେ ରାଜିଲା ସେ ସ୍ଥାନ
ମଧ୍ୟରେ ସୁଦୃଢ଼ ଗଡ଼
ପ୍ରସ୍ତରେ ନିର୍ମିତ ହେଲା ଚାରିଗୋଟି
ବିଶାଳ ପ୍ରାଚୀର ବାଡ଼ ।
ଆଦ୍ୟ ପ୍ରାଚୀରର ପାଶେ ଗଜ, ବାଜୀ
ମହନ୍ତ ନୀଳୟ ମାନ
ତା'ପରେ ଅମାତ୍ୟ ପାଇକଙ୍କ ସହିତରେ
ପାରିଷଦ ଗଣ ।
ତୃତୀୟ ପ୍ରାକାର ପାରୁଶରେ ହେଲା
ନୃପତିଙ୍କ କର୍ମସ୍ଥାନ
ଆଲୋଚନା ଯହିଁ ହେଉଥିଲା ନିତ୍ୟ
ରାଜ୍ୟ ସମାଚାର ମାନ ।
ଶେଷେ ଭାଗେ ଗଡ଼ା ହୋଇଥିଲା ଦୃଢ଼େ

ସୁରମ୍ୟ ରାଜ ସଦନ
ପାରୁଶରେ ତା'ର ଶୋଭା ପାଉଥିଲା
ରମ୍ଭ ପ୍ରମୋଦ ଉଦ୍ୟାନ ।
ଦଳଦଳ ହୋଇ ପାଇକ ଦୁର୍ଗରେ
କରନ୍ତି ସମରାଭ୍ୟାସ ।
ବୀର ବାଦ୍ୟ ସହ ହୁଙ୍କାର ଶବଦେ
ପ୍ରକମ୍ପଇ ଦିଗଦଶ ।
କେ କରଇ କୁସ୍ତି କେ ଶାଣିତ ଅସି
ମାନ ଧରି ବେନି କରେ
ସମୀରୁ ଅଧିକ ଗତିରେ ବୁଲାଇ
ଶୂନ୍ୟ ଦେଶେ ଝାମ୍ପ ମାରେ ।
କାହିଁ ଅଶ୍ୱାରୋହୀ ଚଢ଼ି ବାଜୀ ପୃଷ୍ଠେ
କରେ କ୍ଷିପ୍ର ଧାବମାନ
କାହିଁ ବା ବନ୍ଧୁକ ଧାରୀ ଲକ୍ଷ୍ୟସ୍ଥଳେ
କରନ୍ତି ଗୁଳି ବର୍ଷଣ ।
ନାନା ଅସ୍ତ୍ରଶସ୍ତ୍ରେ ସୁସଜ୍ଜିତ ହୋଇ
ଥିଲା ତହିଁ ରଥ ମାନ
ରଖିଥିଲେ ସଦା ପାଇକେ ଓଡ଼ିଆ
ଜାତିର ଗରବ ଟାଣ ।
ରୁଦ୍ଧ ହେଉଥିଲା କଂସାର କବାଟେ
ଗଡ଼ର ମୁଖ୍ୟ ଅଳିନ୍ଦ
ସଂଜ, ସକାଳରେ ଶୁଭୁଥିଲା ଦୂରେ
ଯା'ର ଝାଉଁ ଝାଉଁ ଶବ୍ଦ ।
ନାହିଁ ସେ ପୂରୁବ ବିଭବ ସକଳ
ନାହିଁ ସେ ପ୍ରାଚୀର ବାଡ଼
କାଳର ଗରଭେ ଲୀନ, କିନ୍ତୁ ଏବେ
ବିଦିତ ଖୋରଧା ଗଡ଼ ।
ମଂଜୁ ଦେବାଳୟ ସ୍ୱଚ୍ଛ ଜଳାଶୟ
ଅଗଣିତ ଭଗ୍ନ ସ୍ତୂପ
ମୂକ ସାକ୍ଷୀ ରୂପେ ଚିହ୍ନାଇ ଦିଅଇ
ପୂର୍ବ ଗଉରବ ରୂପ ।

ଶଇବାଳ ଲତା ଗୁଳ୍ମାକୂଳ, ଭଗ୍ନ
ଜର୍ଜର ପ୍ରାସାଦ ମାନ
ଅତୀତର ସ୍ମୃତି କରାଏ ଜାଗ୍ରତ
ପଡ଼ି ରହି ସ୍ଥାନ ସ୍ଥାନ ।
ଅଛି ସେହି ଶିଳା- ପାବଛର ଶ୍ରେଣୀ
ନାହିଁ ପୂର୍ବ ଗଡରବ
ପଡ଼ିଛି କର୍ପଟ ନାହିଁ ଘନସାର
ହୀନ ତା' କାଳ ଗରଭ ।
ନ ଶୁଭଇ ଆଉ ପାଇକ ପୁଅର
ଅସ୍ତ୍ର ଝଙ୍କାର ଝନ୍‌ଝନ୍
ନ ଝଲକେ ଆଉ ସୌର କରେ ସେହି
ଶାଣିତ ଖଡଗମୂନ ।
ବୀର ବାଦ୍ୟ ଆଉ ନଚୂମ୍ବେ ସେ ଠାବ
ନ ଶୁଭେ ହୁଙ୍କାର ଧ୍ୱନି
ନାହିଁ ଗଜରାଜି ଯାଇଅଛି ଭାଜି
ପୂରୁବ ଗଜ ବନ୍ଧନୀ । (୧୧)

କବି ଦିବାକର ପାଟଶାଣୀ ଯେଉଁ ଗଡ଼ର ବର୍ଣ୍ଣନା କରିଛନ୍ତି ତାହା ଦେଖାଯାଉଥିବା ଭଗ୍ନ ଖୋର୍ଦ୍ଧାଗଡ଼ । ପ୍ରଥମ ରାଜା ରାମଚନ୍ଦ୍ର ଦେବ ଖୋର୍ଦ୍ଧାରେ ଯେଉଁ ଗଡ଼ ନିର୍ମାଣ କରିଥିଲେ ତାହା ଲୁପ୍ତ । ପୂର୍ବରୁ ସେ ସମ୍ବନ୍ଧରେ ଉଲ୍ଲେଖ କରିଛି । ଏହି ପ୍ରଥମ ଗଡ଼ ସମ୍ବନ୍ଧରେ ୧୫୯୮ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଶ୍ରୀଜଙ୍ଗ ଶିଳାଲିପିରେ ଖୋର୍ଦ୍ଧା ଦୁର୍ଗର ଅବସ୍ଥିତି ଓ ପ୍ରାଚୀନତା ଜଣାପଡ଼େ । ପ୍ରସିଦ୍ଧ ମୋଗଲ ସେନାପତି ମାନସିଂହ ୧୫୯୩ ଖ୍ରୀଷ୍ଟାବ୍ଦରେ ଖୁରୁଦା ଆକ୍ରମଣ ପ୍ରସଙ୍ଗରେ ଥିବା ବିବରଣୀର ଇଂରାଜୀ ଅନୁବାଦ ତୃତୀୟ ଖଣ୍ଡ ୧୯୬୭-୬୮ ପୃଷ୍ଠାରେ ଉଲ୍ଲେଖ ଅଛି-Ramachandra entered the fort of Khurda which was the strongest of his fortress, ଅଲିବଦୌନି କୃତ ମନ୍ତଆବୃତ ତଉଆରିଖର ତୃତୀୟ ଖଣ୍ଡ ୩୪୦ ପୃଷ୍ଠାରେ ଉଲ୍ଲେଖ ଅଛି - Mahammad Sharif Saramadi was sent to Bengal in 1591-92 and in the following year was fighting in Orissa against Ramachandra, Raja of Khurda. କସିମ ଫେରିସ୍ତାଙ୍କ ଇତିହାସ-History of Rise of the Mohammedan Power in India, Translated by John Briggs, vol-III Page-466 ପୃଷ୍ଠରେ ଖୁରୁଧା ରାଜ୍ୟ ବିଷୟରେ ସର୍ବଶେଷ ବିବରଣୀ ମିଳେ ।

ଖୋର୍ଦ୍ଧାରେ ରାମଚନ୍ଦ୍ର ଦେବଙ୍କ ଦ୍ୱାରା ନିର୍ମିତ ଦୁର୍ଗ ହେଉ କି ଦିବ୍ୟସିଂହ ଦେବ-୨ୟଙ୍କ ଦ୍ୱାରା ନିର୍ମିତ ବରୁଣାଇ ଘାଟିଠାରେ ନିର୍ମିତ ଦୁର୍ଗ ହେଉ ତାହା କେବଳ ଇତିହାସରେ ପରିଣତ ହୋଇଛି । ଖୋର୍ଦ୍ଧାଗଡ଼ ସଂଲଗ୍ନରେ ଥିବା ମନ୍ଦିର, ପୁଷ୍କରିଣୀ ଆଦି ଗଜପତି ରାଜତ୍ୱ କାଳର ଇତିହାସର ସ୍ମୃତିକୁ ରୋମନ୍ଥନ କରୁଅଛି । ଏହା ମଧ୍ୟରେ ରହିଛି ଗୋପାଳ ଜିଉ ମନ୍ଦିର (୪୮ଫୁଟ୍), ଓଡ଼ିଆ ମଠ ମନ୍ଦିର (୪୮ଫୁଟ୍) ଓ ନୀଳକଣ୍ଠେଶ୍ୱର ମନ୍ଦିର (୩୫ ଫୁଟ୍) ପ୍ରଭୃତି । ଗଡ଼ର ଅନ୍ତଃ ପ୍ରାଚୀର ମଧ୍ୟରେ ଥିବା ପ୍ରାସାଦ ସହିତ କନକ ଦୁର୍ଗା ମନ୍ଦିର ମେଜର ଫ୍ଲେଚରଙ୍କ ଦୁର୍ଗ ଆକ୍ରମଣ ସମୟରେ ନିଶ୍ଚିହ୍ନ ହୋଇଥିବାର ଜଣାପଡ଼େ । କୁଞ୍ଜବିହାରୀ ମନ୍ଦିର ଗଡ଼ ବାହାରେ ଉତ୍ତର ଦିଗରେ ଅବସ୍ଥିତ । ଦାକ୍ଷିଣାତ୍ୟରୁ ଆସିଥିବା ସାକ୍ଷୀଗୋପାଳ କିଛିକାଳ ଗୋବିନ୍ଦ ଗୋପାଳ ମଧ୍ୟରେ ଥିବାବେଳେ କୁଜଙ୍ଗରୁ ଆସିଥିବା ବ୍ରହ୍ମ ଶ୍ରୀଜଗନ୍ନାଥ ମନ୍ଦିରରେ ପୂଜା ପାଉଥିଲେ । ଏହା ଥିଲା ଗଡ଼ ଖୋର୍ଦ୍ଧାର ପ୍ରଥମ ମନ୍ଦିର ।

**ତଥ୍ୟଧାରିକା**


୧. ପାଇକ ମାଟିର ଗାଥା - କୃଷ୍ଣଚନ୍ଦ୍ର ତ୍ରିପାଠୀ (ଲାଲମାଟିର କବିତା- ପୃ. ୪୬), ସଂକଳକ- ସତ୍ୟବାଦୀ ବଳିଆରସିଂହ

୨. ଖୋରଧା ଗଡ଼- ଜାନକୀ ବଲ୍ଲଭ ପଟ୍ଟନାୟକ (ଲାଲମାଟିର କବିତା- ପୃ. ୩୭), ସଂକଳକ- ସତ୍ୟବାଦୀ ବଳିଆରସିଂହ

୩. 'ବରୁଣି ପାହାଡ଼, ବରୁଣି ପାହାଡ଼'- କବିତା- ୧୯୮୫ ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

୪. ପ୍ରଥମ ବିଦ୍ରୋହର ପ୍ରମୁଖ ଦୁର୍ଗ- ଖୁରୁଧା ଗଡ଼- ଅସିତ ମହାନ୍ତି (Procursor to freedom struggle in India. Page- 197, 198)

୫. ଜଗନ୍ନାଥପୁର କଟକ- ଏକ ଅଧ୍ୟୟନ- କସ୍ତୁରୀ ପୃଷ୍ଠା-୬୨, ମୁରଲୀଧର ପ୍ରଧାନ।

୬. ଅନାଇ ରହିଛି ଗଡ଼ ଗଡ଼ଖାଇ- ପୃ. ୬୫, ସତ୍ୟବାଦୀ ବଳିଆରସିଂହ

୭. ଦୁଟି ଇନ୍ଦ୍ରଦ୍ୟୁମ୍ନ- ଡ. କୁଂଜବିହାରୀ ମହାନ୍ତି (ଲାଲମାଟିର କବିତା) ପୃ-୫୩, ସଂକଳକ- ସତ୍ୟବାଦୀ ବଳିଆରସିଂହ

୮ ପ୍ରଥମ ବିଦ୍ରୋହର ପ୍ରମୁଖ ଦୁର୍ଗ- ଖୋରଧା ଗଡ଼- ଅସିତ ମହାନ୍ତି (Procursor to freedom struggle in India. Page- 191, 192)

୯. ପୁନଶ୍ଚ ଥରେ ମୁଣ୍ଡଟେକ- ଶାନ୍ତି ଦାସ (ଲାଲ ମାଟିର କବିତା- ପୃ. ୪୩)

୧୦.ଜଗନ୍ନାଥପୁର କଟକ- ଏକ ଅଧ୍ୟୟନ- ମୁରଲୀଧର ପ୍ରଧାନ- କସ୍ତୁରୀ-୬୨

୧୧.ସେହି ସେ ଜଜାରସିଂହ- ଦିବାକର ପାଟଶାଣୀ (ଲାଲମାଟିର କବିତା- ପୃ. ୩୨)




## ଅଧ୍ୟାୟ # ୬

# ବରୁଣେଇର ପାଇକ ସ୍ମାରକୀସ୍ଥଳ ଓ ଐତିହ୍ୟ

ବରୁଣେଇ ପାଦଦେଶରେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ପାଇକ ସ୍ମାରକୀ ଶିଳାନ୍ୟାସ ୨୦୧୯ ଡିସେମ୍ବର ୮ ତାରିଖ ଦିନ ଭାରତର ମହାମହିମ ରାଷ୍ଟ୍ରପତି ରାମନାଥ କୋବିନ୍ଦ ଉଦ୍‌ଘାଟନ କରିଛନ୍ତି । ଭାରତର ସ୍ୱାଧୀନତା ସଂଗ୍ରାମରେ ପାଇକ ବିଦ୍ରୋହର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ପାଇକ ସ୍ମାରକସ୍ଥଳ ଉଦ୍‌ଘାଟନ କରିବା ଅବସରରେ ମହାମହିମ ରାଷ୍ଟ୍ରପତିଙ୍କ ସମେତ କାର୍ଯ୍ୟକ୍ରମର ମୁଖ୍ୟ ଦାୟିତ୍ୱବହନ କରିଥିବା କେନ୍ଦ୍ରମନ୍ତ୍ରୀ ଧର୍ମେନ୍ଦ୍ର ପ୍ରଧାନ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ, ଆନ୍ଧ୍ର ରାଜ୍ୟପାଳ ବିଶ୍ୱଭୂଷଣ ହରିଚନ୍ଦନ, ଓଡ଼ିଶା ରାଜ୍ୟପାଳ ଗଣେଶୀ ଲାଲ, କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ପ୍ରତାପ ଚନ୍ଦ୍ର ଷଡ଼ଙ୍ଗୀ ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ । ପାଇକ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ରୂପେ ସ୍ଥାନ ଦେବା ପାଇଁ ୨୦୦୮ ମସିହାରୁ ନିରନ୍ତର ପ୍ରୟାସ ଜାରି ରଖି ଆସିଥିବା ପ୍ରମୁଖ ବ୍ୟକ୍ତି ମାନ୍ୟବର ଆନ୍ଧ୍ର ରାଜ୍ୟପାଳ ବିଶ୍ୱଭୂଷଣ ହରିଚନ୍ଦନ ତାଙ୍କର ପ୍ରଥମ ସମ୍ଭାଷଣରେ ଓଡ଼ିଆ ଜାତିର କୀର୍ତ୍ତି ଗୌରବ ଉପରେ ଆଲୋକପାତ କରିଥିଲେ । ମାନ୍ୟବର ରାଷ୍ଟ୍ରପତି ଶ୍ରୀ ରାମନାଥ କୋବିନ୍ଦ ତାଙ୍କ ଭାଷଣ ହିନ୍ଦୀରେ ନିମ୍ନମତେ ପ୍ରଦାନ କରିଥିଲେ ।

"ଖୋରଧା କୀ ଇସ୍ ପବିତ୍ର ଧରତୀ ସେ, ମେଁ ପାଇକ ବିଦ୍ରୋହ କେ ବୀର- ବଳି ଦାନିୟୋଁ କୋ ନମନ କରତା ହୁଁ । ଭଗବାନ ଜଗନ୍ନାଥ କା ୟହି କ୍ଷେତ୍ର ଭକ୍ତି ଔର କ୍ରାନ୍ତି କା ଅପୂର୍ବ ସଂଗମ ପ୍ରସ୍ତୁତ କରତା ହୈ । ୟହାଁ କେ ପାଇକ ବିଦ୍ରୋହିୟୋଁ ନେ ଅନ୍ୟାୟ କେ ବିରୁଦ୍ଧ ଜବ୍ ଶସ୍ତ୍ର ଉଠାୟା ତୋ ଉନ୍‌କା ଯୁଦ୍ଧଘୋଷ ଥା 'ଜୟ ଜଗନ୍ନାଥ' । ଇସ ବୀରଭୂମି ମେଁ ପାଇକ ବିଦ୍ରୋହ କେ ସେନାନିୟୋଁ କେ ସ୍ମାରକ ସ୍ଥଳ କି ଭୂମିପୂଜା ଔର ଶୀଲାନ୍ୟାସ କା ଅବସର ପ୍ରଦାନ କୀନେ କେ ଲିୟେ ମେଁ ଇସ୍ ସମାରୋହ କେ ଆୟୋଜକୋଁ କୋ ଧନ୍ୟବାଦ ଦେତା ହୁଁ । ହମାରେ ଇତିହାସ କେ ଗୌରବଶାଳୀ ଅଧ୍ୟାୟୋଁ ସେ ଦେଶବାସୀୟୋଁ କୋ ପରିଚିତ କରାନା, ଖାସ୍‌କର ୟୁବା ପିଢ଼ି କୋ ପୂର୍ବୋଜୋଁ କେ ବଳିଦାନ କା ମହତ୍ତ୍ୱ ସମଝାନା, ରାଷ୍ଟ୍ର ନିର୍ମାଣ କା ଏକ ଅହମ ହିସ୍‌ସା ହୈ । ୟହାଁ ଜୀସ୍ ସ୍ମାରକ କା ନିର୍ମାଣ ହୋଗା, ୱୁହ ପାଇକ ସୁରବୀରୋଁ କୀ ଗାଥା କୋ ଭବିଷ୍ୟ କେଲିୟେ ସଂୟୋଜକର ରଖେଗା ଔର ଆନେ ବାଲୀ ପିଢ଼ିୟୋଁ କେ ଲିୟେ, ପ୍ରେରଣା କା ସ୍ରୋତ ବନା ରହେଗା । ମୁଝେ ବିଶ୍ୱାସ ହୈ କି ଆନେବାଲେ ସମୟ ମେଁ ଲଗଭଗ୍ ୧୦ ଏକଡ କେ ଇସ୍ ପାଇକ ବିଦ୍ରୋହ ସ୍ମାରକ ପରିସର କୋ ଏକ ତୀର୍ଥସ୍ଥଳ କୋ ମହିମା ପ୍ରାପ୍ତ ହୋଗୀ ।

ଅଂଗ୍ରେଜୋଁ କେ ଅତ୍ୟାଚାର ବିରୁଦ୍ଧ ଲଡ଼ନେବାଲୀ ସେନାଓଁ ମେଁ ଓଡ଼ିଶା କେ ଇସ୍ କ୍ଷେତ୍ର କେ ସଭି ବର୍ଗୋ କେ ଲୋଗ ଜୁଡ଼ ଗଏ ଔର ପାଇକ ବିଦ୍ରୋହିୟୋଁ କା ସମର୍ଥନ କିୟା । ଜୟ ଜଗନ୍ନାଥ କା ଘୋଷ କରତେ ହୁୟେ ଭୂସ୍ୱାମୀ, କିଶାନ୍, ଆଦିବାସୀ, ଶିଳ୍ପକାର, ଜୁଲାହେ, କାରିଗର ଔର ମଜଦୁର, ସଭି ନେ ପାଇକ ବିଦ୍ରୋହିୟୋଁ କା ସାଥ ଦିୟା ଓ୍ୱର ଇସ୍ ତରହ ଓ୍ୱହ ବିଦ୍ରୋହ ଏକ ବ୍ୟାପକ ଆନ୍ଦୋଳନ ବନ୍ ଗୟା । ଯଦ୍ୟପି ଅଂଗ୍ରେଜ ଉସ ଆନ୍ଦୋଳନ କୋ ଦବାନେ ମେଁ ସଫଳ ରହେ ଓ୍ୱର ବକ୍ସି ଜଗବନ୍ଧୁ କାରାବାସ ମେଁ ଶହୀଦ ହୁଏ, ଲେକିନ୍ ଓ୍ୱହ ବିଦ୍ରୋହ ଏକ ସୁସଂଗଠିତ ଆନ୍ଦୋଳନ କେ ରୂପ ମେଁ ଅମର ହୋ ଗୟା । ସନ୍ ୨୦୧୭ ମେଁ ଉସ୍ ଆନ୍ଦୋଳନ କେ ୨୦୦ ସାଲ୍ ପୂରା ହୋନେ କେ ଉପଲକ୍ଷ ମେଁ ଭାରତ ସରକାର ନେ ବଡେ ପୈମାନେ ପର ଅନେକ ସମାରୋହ କିଏ। ପାଇକ ବିଦ୍ରୋହ କେ ବିଷୟ ମେଁ ଜାଗରୁକ୍‌ତା ବଢ଼ାନେ କେ ଲିଏ ମହତ୍ୱପୂର୍ଣ୍ଣ କଦମ ଉଠାଏ ଗୟେ ହୈ । ପାଇକ ବିଦ୍ରୋହ କେ ବିଷୟ ପର ଅଧ୍ୟୟନ ଔର ଅନୁସନ୍ଧାନ କରନେ କେ ଲିୟେ ଉତ୍କଳ ବିଶ୍ୱ ବିଦ୍ୟାଳୟ ମେ ଏକ ବିଶେଷ ପୀଠ କୀ ସ୍ଥାପନା କୀ ଗଇ ହୈ । ଅଭି ଆପ୍ ସବ୍‌ନେ ଆନ୍ଧ୍ରପ୍ରଦେଶ ରାଜ୍ୟପାଳ ଶ୍ରୀ ହରିଚନ୍ଦନଜୀ କା ଜ୍ଞାନବର୍ଦ୍ଧକ ସଂବୋଧନ ଶୁନା। ଉହ୍ନୋନେ ପାଇକ ବିଦ୍ରୋହ ପର୍ ଗହରା ଅଧ୍ୟୟନ କିୟା ହୈ ଓ୍ୱର ଅନେକ ପୁସ୍ତକେ ଭି ଲିଖୀ ହୈ । ଜରୁରତ୍ ଇସ୍ ବାତ୍ କୀ ହୈ କି ଭାରତୀୟ ଇତିହାସ କି ଗୌରବଶାଳୀ ଉପଲବ୍ଧିୟୋଁ କେ ବିଷୟ ମେ ଇସ୍ ପ୍ରକାର କେ ଅଧ୍ୟୟନ ଓ୍ୱର ପ୍ରକାଶନ ନିରନ୍ତର ହୋତେ ରହେ ।

ଇସ୍ ସ୍ମାରକ କେ ବନ ଜାନେ ପର ୟହାଁ ଦେଶ-ବିଦେଶ ସେ ଆନେ ବାଲେ ପର୍ଯ୍ୟଟକୋ ଓ୍ୱର ବିଶେଷକର ୟୁବାଓଁ କୋ ପାଇକ ବିଦ୍ରୋହ ସେ ଜୁଡ଼ି ମହତ୍ୱପୂର୍ଣ୍ଣ ଜାନକାରୀ ଉପଲବ୍ଧ ହୋଗୀ । ପାଇକ ବିଦ୍ରୋହ ସ୍ମାରକ କା ନିର୍ମାଣ କରନେ ମେଁ, କେନ୍ଦ୍ର ଓ୍ୱର ରାଜ୍ୟ ସରକାର କେ ପ୍ରୟାସ ସରହନୀୟ ହେଁ । ମୁଝେ ପ୍ରସନ୍ନତା ହୈ କି ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲଜୀ କା ଅନୁଭବୀ ମାର୍ଗଦର୍ଶନ ଓଡ଼ିଶା ରାଜ୍ୟକୀ ସରକାର ଔର ଜନତା କୋ ପ୍ରାପ୍ତ ହୋ ରହା ହୈ । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଜୀ ନେ ଔର କେନ୍ଦ୍ର ସରକାର ମେଁ ମନ୍ତ୍ରୀ ଧର୍ମେନ୍ଦ୍ର ପ୍ରଧାନଜୀ ନେ ଇସ୍ ସ୍ମାରକୀ କେ ନିର୍ମାଣ କୋ ବିଶେଷ ମହତ୍ୱ ଦିୟା ହୈ । ଇସ୍‌କେ ଲିଏ ମେଁ ଉନ୍‌ହେଁ ବଧାଇ ଦେତା ହୁଁ ।"

୨୦୧୯ ଡିସେମ୍ବର ୮ ତାରିଖ ରାଷ୍ଟ୍ରପତିଙ୍କ ବରୁଣେଇକୁ ଆଗମନ ପୂର୍ବରୁ ଯେଉଁ ଯେଉଁ ପର୍ଯ୍ୟାୟ ଦେଇ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଓଡ଼ିଶାର ପାଇକ ବିଦ୍ରୋହକୁ ମାନ୍ୟତା ଦିଆଗଲା ତା'ର ଅବତାରଣା କରିବା ପ୍ରାସଙ୍ଗିକ ହେବ ।

୨୦୧୭ ମାର୍ଚ୍ଚ ମାସ ୨୫ ତାରିଖ କେନ୍ଦ୍ର ଅର୍ଥ ମନ୍ତ୍ରୀ ସ୍ୱର୍ଗତ ଅରୁଣ ଜେଟଲି ଓଡ଼ିଶାର ପାଇକ ବିଦ୍ରୋହକୁ ଦେଶର ସ୍ୱାଧୀନତା ସଂଗ୍ରାମ ରୂପେ ଉଦ୍‌ଘୋଷଣା କରି ଦୁଇଶ କୋଟି ଟଙ୍କାର ବଜେଟ୍ ଉପସ୍ଥାପନା ଏକ ଗୌରବମୟ ଘଟଣା ଥିଲା । ଆନ୍ଧ୍ରର ରାଜ୍ୟପାଳ ମାନ୍ୟବର ବିଶ୍ୱଭୂଷଣ ହରିଚନ୍ଦନ ୨୦୦୮ ମସିହାରେ ପାଇକ ବିଦ୍ରୋହର ୧୯୦ ବର୍ଷ ପାଳନ ଅବସରରେ 'ସିପାହୀ ବିଦ୍ରୋହ ନୁହେଁ', ପାଇକ ବିଦ୍ରୋହ ହିଁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ' ଘୋଷଣା ପାଇଁ ଯେଉଁ ଦାବି କରିଆସୁଥିଲେ ତାହା ସାର୍ଥକ ହେଲା । ସୁପ୍ତ ଓଡ଼ିଆ ଜାତି ଶତସିଂହର ବଳନେଇ ମହାନ୍ ପାଇକ ବିଦ୍ରୋହର ସ୍ମୃତିକୁ ରୋମନ୍ଥନ କରିବାକୁ ଶକ୍ତି ସଂଚାର କଲା । ଓଡ଼ିଶାର ବରପୁତ୍ର ମାନ୍ୟବର କେନ୍ଦ୍ରମନ୍ତ୍ରୀ ଧର୍ମେନ୍ଦ୍ର ପ୍ରଧାନ ଓଡ଼ିଆ ଅସ୍ମିତାର ପରିଚୟ ଦେବାକୁ ଜାତୀୟ ସ୍ତରରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ୧୮୧୭ ପାଇକ ବିଦ୍ରୋହକୁ ଭାରତର ପ୍ରଥମ ମୁକ୍ତି ସଂଗ୍ରାମ ରୂପେ ଉପସ୍ଥାପିତ କରିପାରିଲେ ତାହା ଅବିସ୍ମରଣୀୟ । ଇଂରେଜ ଐତିହାସିକ G. Toynbeeଙ୍କ "A Sketch of the History of Orissa"ର The Khurdha Rebellion- AD 1817-18, ଐତିହାସିକ A. Stirlingଙ୍କ An account of Orissa Proper with Appendices, ଐତିହାସିକ W.W. Hunterଙ୍କ Orissa- Volume-II, L.S.S. O'Malleyଙ୍କ Bihar and Orissa District Gazetteers- Puri, R.D. Banerjeeଙ୍କ "The British conquest and Administration' Sashi Bhusan Chowdhuryଙ୍କ "Civil Disturbances during the British rule in India (1765-1857), Yaaminay Mubayiଙ୍କ "The Paik Rebellion of 1817 Status and conflict in Early Colonial Orissa", Prof B.C. Rayଙ୍କ Foundations of British Orissa- Rebellion of 1817, Prof P. Mukharjeeଙ୍କ History of Orissa in the 19th century- The Paik Rising of 1817", ଆଦି ପୁସ୍ତକ ଉପସ୍ଥାପିତ କରାଯାଇଥିଲା । ଏ ସମସ୍ତ ପୁସ୍ତକ ଓଡ଼ିଶା ପାଇକ ବିଦ୍ରୋହ-୧୮୧୭ର ଗୌରବ ଉଜ୍ଜ୍ୱଳ ଅଧ୍ୟାୟକୁ ତେଜୋଦୀପ୍ତ କରିଥିଲା । ଏହା ପରେପରେ କେନ୍ଦ୍ର ମାନବ ସମ୍ବଳ ମନ୍ତ୍ରୀ ପ୍ରକାଶ ଜାଭେଡକର ପାଇକ ବିଦ୍ରୋହକୁ ଜାତୀୟ ସ୍ତରରେ ପାଠ୍ୟ ପୁସ୍ତକରେ ସ୍ଥାନ ଦେବାକୁ ଘୋଷଣା କଲେ । ସମ୍ପ୍ରତି ଏନ୍.ସି.ଆର୍.ଟି ଦ୍ୱାରା ପ୍ରକାଶିତ ଅଷ୍ଟମ ଶ୍ରେଣୀ Social Science- Part-II ପୁସ୍ତକରେ ଏହା ସ୍ଥାନ ପାଇଥିବା ଅଭିନନ୍ଦନୀୟ ।

୧୬.୦୪.୨୦୧୭ ତାରିଖ ଦିନ ମାନ୍ୟବର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦୀଙ୍କ ଦ୍ୱାରା ଓଡ଼ିଶା ରାଜଭବନରେ ପାଇକ ବିଦ୍ରୋହର ମହାନାୟକ ବକ୍ସି ଜଗବନ୍ଧୁଙ୍କ ସମେତ ଷୋହଳଜଣ ଶହୀଦ-ସଂଗ୍ରାମୀଙ୍କ ଦାୟାଦମାନଙ୍କୁ ସମ୍ବର୍ଦ୍ଧିତ କରିଥିଲେ ।

୨୦.୦୭୨୦୧୭ ନୂଆଦିଲ୍ଲୀ ବିଜ୍ଞାନ ଭବନଠାରେ ମାନ୍ୟବର ରାଷ୍ଟ୍ରପତି ପ୍ରଣବ ମୁଖାର୍ଜିଙ୍କ ଦ୍ୱାରା ପାଇକ ବିଦ୍ରୋହର ଦୁଇଶହ ବର୍ଷ ପୂର୍ତ୍ତି ଉତ୍ସବର ଉଦ୍‌ଘାଟନ ହୋଇଥିଲା ।

ଭାରତ ସରକାରଙ୍କ ପ୍ରେସ୍ ଇନ୍‌ଫର୍ମେସନ ବ୍ୟୁରୋରୁ ମିଳିଥିବା ସମ୍ବାଦ ଅନୁସାରେ ରାଷ୍ଟ୍ରପତିଙ୍କ ଭାଷଣ ଥିଲା ଏହିପରି-

"The President of India Shri Pranab Mukharjee inagurated the 200th anniversary celebrations of the Paika Rebellion of Odisha today (July 20, 2017) in New-Delhi.

Speaking on the occasion the President said that it was indeed a privilege for him to be present on the occasion of inauguration of year-long celebration of Bi-centenary of the Paika Bidroh of Odisha. He congratulated the People of the country and especially those of Odisha on the occasion. He stated that 40 years before the revolt of 1857, which was later termed as 1st war of Indian Independence against British colonialism, a battle was fought under the leadership of Buxi Jagabandu of Odisha, Many scholars, researchers and historians have opined that the Paika Rebellion of 1817 was India's first organised armed rebellion against British Raj. He said that completion of two hundred years of this popular uprising was a special event. The legend of the heroics of Buxi Jagabandu continues to inspire the people of Odisha. It is time, this struggle and sacrifice by a generation of Odia people got its due place in the annals of history. The President said that the Paika uprising was in the nature of a rebellion by people of odisha. It was aimed at upholding the rights of the odia people and sovereignty of Odisha. Paika Rebellion was not only the rebellion of Paikas, it was a National war waged by ordinary people at the grass roots level who resented the dispossession of their sovereign of their rights and the consequential repressive measures that followed. As we celebrate 200 years of the Paika Rebellion, it is time to remember the great history of our country and pay respects to other great warriors of Paika Bidroh who fought side by side such as Dinabandu Samantray mahapatra, Dama Subudhi Mangaraj, Samanta, Madhaba Chandra Routray (Dalabehera of Tapanga) Pindiki Bahubalendra, Krutibas

Patsani and Many more heroes of Paika Bidroh. The President congratulated the Government for recognizing this great event of our cherished history of freedom struggle. He said that the year-long celebrations should be documented for future guidance at the end of the year. He also urged historians to concentrate on indigenous source materials available in folk songs and folk stories narrated over the years by on generation to another."(2)

ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀଙ୍କ ବ୍ୟତୀତ କେନ୍ଦ୍ରମନ୍ତ୍ରୀ ଧର୍ମେନ୍ଦ୍ର ପ୍ରଧାନ, କେନ୍ଦ୍ରମନ୍ତ୍ରୀ ଜୁଏଲ ଓରାମ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ, କେନ୍ଦ୍ରମନ୍ତ୍ରୀ ମହେଶ ଶର୍ମା ସଭାରେ ଯୋଗଦେଇ ଉଦ୍‌ବୋଧନ ଦେଇଥିଲେ। ଏହି ସଭାରେ ଓଡ଼ିଶାର ସମସ୍ତ ସାଂସଦ, ଓଡ଼ିଶାର ଅନେକ ମନ୍ତ୍ରୀ ଓ ବିଧାୟକ ନୂଆଦିଲ୍ଲୀରେ ରହୁଥିବା ବହୁ ଓଡ଼ିଆ ଅଧିକାରୀ ଓ ବ୍ୟବସାୟୀ ଉପସ୍ଥିତ ଥିବାବେଳେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବିଭିନ୍ନ ପାଇକ ସଂଗଠନର କର୍ମକର୍ତ୍ତା ଯୋଗଦେଇଥିଲେ । ମୁଁ ମଧ୍ୟ ଏହି ସଭାରେ ଯୋଗଦେଇ ଅନୁଭବ କରୁଥିଲି ସତେ ଯେପରି ସମଗ୍ର ଓଡ଼ିଶା ଆଜି ତା'ର ପୂର୍ବ ଅସ୍ମିତାକୁ ଫେରି ପାଇବା ପାଇଁ ଏକ ହୋଇଛି।

ପାଇକ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ରୂପେ ଘୋଷଣା କରିବାକୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଭାରତର ପ୍ରତିରକ୍ଷା ମନ୍ତ୍ରୀ ରାଜନାଥ ସିଂଙ୍କୁ ଦେଇଥିବା ପତ୍ର ଥିଲା -

Dear Shri Rajnath Singhji,

The history of Indian Freedom Struggle is unique. One of the most populous countries of the world with diverse cultural and linguistic regions and social hierarchies, coming together in unison, fighting against the might of the colonial rule, becoming a free nation, and emerging as the largest electoral democracy has no parallel in the history of the world.

The most prominent and basic character of the Indian Freedom Movement is its plural foundation and the consequential inclusiveness. The Paika Rebellion (1817 AD) of Odisha, which took place 40 years before the "Sepoy Mutiny" (1857 AD) eminently qualifies to be called

as the “First War of Indian Independence” not simply because it took place four decades prior to the Sepoy Mutiny but due to its very nature and characteristic features. Paika Rebellion, popularly known as *Paika Bidroha*, was a broad based and well organized plural struggle against the oppressive rule of the British East India Company. It involved all sections of the people. It cannot be a mere coincidence that Paika Rebellion measured by its form as well as content provides a marvellous analogy with the subsequent freedom movement and its outcome.

Since the colonial rule of India had its origins in the East India Company, the genesis of the events that led to the Sepoy Mutiny and their further consequences need to be traced back to the earlier instances of organized rebellion against the East India Company. Of such earlier resistances and rebellions, the Paika Rebellion stands out prominently as it was essentially a broad based people’s movement. It played the role of a torchbearer and catalyst in shaping a people’s movement of resistance, which ultimately led to the Indian Independence Movement. Considering the above, my Cabinet in a special meeting held yesterday has decided to propose to the Government of India to declare the *Paika Bidroha* as the First War of Indian Independence.

I think, that would be a befitting tribute to commemorate the 200th Anniversary of the Paika Rebellion. I request the Government of India to consider this proposal positively so that the people of India appreciate, in correct perspective, the events that led to the Indian Freedom Struggle and our historic Independence from the foregn rule.

With regards,

Yours sincerely,

(NAVEEN PATNAIK)

SHRI RAJNATH SINGH,
Minister of Home Affairs,
Government of India,
North Block,
New Delhi - 110 001

୨୪.୧୨.୨୦୧୮ ତାରିଖ ଭୁବନେଶ୍ୱର (ଜଟଣୀ-ଅରଗୁଳ) ଆଇଆଇଟି ପରିସରରେ ବିଜ୍ଞ ସମାବେଶରେ ମାନ୍ୟବର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦୀଙ୍କ ଦ୍ୱାରା ପାଇକ ବିଦ୍ରୋହ ସ୍ମୃତି ସ୍ମାରକୀ, ମୁଦ୍ରା ପ୍ରଚଳନ, ଡାକ ଟିକଟ ପ୍ରଚଳନ, ଉତ୍କଳ ବିଶ୍ୱବିଦ୍ୟାଳୟରେ ବକ୍ସି ଜଗବଂଧୁ ଚେୟାର ପ୍ରତିଷ୍ଠା ଉଲ୍ଲେଖଯୋଗ୍ୟ ଘଟଣା ଥିଲା ।

ପାଇକ ବିଦ୍ରୋହ ଯେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଏହା କେନ୍ଦ୍ର ସରକାର ଉପଲବ୍ଧି କଲେ । ୨୦୦୮ରେ ଭାରତ ସରକାର ଯେତେବେଳେ ୧୮୫୭ରେ ହୋଇଥିବା ସିପାହୀ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଏବଂ ଏହାର ୧୫୦ତମ ପୂର୍ତ୍ତି ପାଳନ କରିବାକୁ ନିଷ୍ପତ୍ତି ନେଲେ ସେତେବେଳେ ଓଡ଼ିଶାରେ ଏହି ଘୋଷଣାର ପ୍ରତିବାଦ ହୋଇଥିଲା । ଭୁବନେଶ୍ୱର ୟୁନିଟ୍-୩ ପ୍ରଦର୍ଶନୀ ପଡ଼ିଆରେ ସାରା ଓଡ଼ିଶାର ପାଇକମାନଙ୍କର ଏକ ସମାବେଶ ହୋଇଥିଲା । ରାଜ୍ୟର ବିଭିନ୍ନ ଜିଲ୍ଲାରୁ ୮୭ଟି ପାଇକ ଆଖଡ଼ା ଦଳ ଯୋଗଦେଇଥିଲେ । ବରୁଣେଇ ଦେବୀଙ୍କ ପୀଠରୁ ମଶାଲ ଶୋଭାଯାତ୍ରାରେ ପାଇକ ଆଖଡ଼ା ଦଳ ବାହାରି ୟୁନିଟ୍-୩ ପ୍ରଦର୍ଶନୀ ପଡ଼ିଆରେ ଏକତ୍ର ହୋଇଥିଲେ । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକସମ୍ପର୍କ ବିଭାଗ ପକ୍ଷରୁ ଏହା ଅନୁଷ୍ଠିତ ହୋଇଥିଲା । ଏହା ୨୦୦୮ ମସିହା ଫେବୃଆରୀ ମାସ ୮ ତାରିଖ ଦିନ ମହାସମାରୋହ ପାଳିତ ହୋଇଥିଲା । ଏହି କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ କଳିଙ୍ଗ ପାଇକ ସଂଗଠନ ସକ୍ରିୟ ଭୂମିକା ନେଇଥିଲା । "ଓଡ଼ିଶାର ଆଇନ୍ ବିଭାଗ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କ ଅଧ୍ୟକ୍ଷତାରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମୁଖ୍ୟ ଅତିଥି ରୂପେ ଯୋଗଦେଇ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପରିଚାଳିତ ପାଇକ ବିଦ୍ରୋହ ଇଂରେଜ ଶାସନକୁ କିଭଳି ଭୟଭୀତ କରାଇଥିଲା ତାହା ଉପସ୍ଥାପିତ କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ସଂସ୍କୃତି ବିଭାଗ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର, ସ୍ୱାସ୍ଥ୍ୟ ବିଭାଗ ମନ୍ତ୍ରୀ ସନାତନ ବିଶି, ସୂଚନା ଓ ଲୋକସମ୍ପର୍କ ବିଭାଗ ମନ୍ତ୍ରୀ ଦେବାଶିଷ ନାୟକ, ସାଂସଦ ଡ. ପ୍ରସନ୍ନ କୁମାର ପାଟଶାଣୀ, ଚିଲିକା ବିଧାୟକ ବିଭୂତି ଭୂଷଣ ହରିଚନ୍ଦନ, ଭୁବନେଶ୍ୱର ମେୟର ମିହିର କୁମାର ମହାନ୍ତି, ଉପମେୟର ଉର୍ମିଳା ମହାପାତ୍ର ନିଜ ନିଜର ବକ୍ତବ୍ୟ ରଖି ପାଇକ ବିଦ୍ରୋହର ଗୌରବୋଜ୍ଜ୍ୱଳ ଇତିହାସର ଅବତାରଣା କରିଥିଲେ । ସୂଚନା ଓ ଲୋକ ସମ୍ପର୍କ ବିଭାଗ

ଶାସନ ସଚିବ ଗୋପୀନାଥ ମହାନ୍ତି ସ୍ୱାଗତ ଭାଷଣ ଓ କଳିଙ୍ଗ ପାଇକ ସଂଗଠନର କାର୍ଯ୍ୟକାରୀ ସଭାପତି ଇଂ. ଶିଶିର କୁମାର ନାୟକ ଧନ୍ୟବାଦ ଦେଇଥିଲେ ।' (୩)

କଳିଙ୍ଗ ପାଇକ ସଂଗଠନ କେବଳ ପାଇକମାନଙ୍କୁ ଏକଜୁଟ କରିବା ନୁହେଁ ବରଂ ଓଡ଼ିଶାର ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ପାଇଁ କାର୍ଯ୍ୟ କରିଆସୁଛି। ଏ ସଂଗଠନ ପ୍ରତିଷ୍ଠା ବେଳେ ଜଙ୍କିଆର କାଳୁଚରଣ ଛୋଟରାୟ, ଦଳେଇପୁଟର ପ୍ରଭାକର ହରିଚନ୍ଦନ, ଜଟଣୀ ଖୁଦୁପୁରର ସାରଙ୍ଗଧର ବଳିଆରସିଂହ, କୃଷ୍ଣପୁରର ହରିବନ୍ଧୁ ମଙ୍ଗରାଜ ପ୍ରମୁଖ 'ପାଇକବାର୍ତ୍ତା' ନାମରେ ତ୍ରୟମାସିକ ପତ୍ରିକା କାଢ଼ି ସଂଗଠନକୁ ଦୃଢ଼ କରିଥିଲେ । କଳିଙ୍ଗ ପାଇକ ସଂଗଠନ ପ୍ରତିଷ୍ଠା ବେଳେ ଯେଉଁମାନେ କାର୍ଯ୍ୟ କରିଥିଲେ ସେମାନଙ୍କ ମଧ୍ୟରୁ ପୂର୍ବତନ ମନ୍ତ୍ରୀ ଡାକ୍ତର ବେଣୁଧର ବଳିଆରସିଂହ, ପ୍ରାକ୍ତନ ବିଧାୟକ ତଥା ସାହିତ୍ୟିକ ସତ୍ୟାନନ୍ଦ ଚମ୍ପତିରାୟ, ଆଇଗିଣିଆର ଭୀମସେନ ଜେନା, ବାଣପୁରର ଦୋଳଗୋବିନ୍ଦ ବଳିଆରସିଂହ, ଗୋଲକ ବିହାରୀ ବରାଳ, ଗଡ଼ ବଳଭଦ୍ରପୁରର କୃଷ୍ଣମୋହନ ବଳିଆରସିଂହ, ବୋଲଗଡ଼ ଖଙ୍ଗୁରିଆର ବ୍ରଜକିଶୋର ରାୟ, ଗୋତଳମାର ଭ୍ରମରବର ନରେନ୍ଦ୍ର ଓ ପଦ୍ମଚରଣ ମଙ୍ଗରାଜ, ଖୋର୍ଦ୍ଧା ଭାଲିଆବାଡ଼ିର ଗଗନ ବିହାରୀ ବଳିଆରସିଂହ, କୁଞ୍ଜୁରୀ ବରପଦାର ରଘୁନାଥ ବଳିଆରସିଂହ, ମଳିପଡ଼ା ଦଳବେହେରା ବିଜୟ କୁମାର ହରିଚନ୍ଦନ, ମାଣିକାଗୋଡ଼ା ଦଳବେହେରା ହବିବୁର ରହେମାନ, ଗଡ଼ କାଳୁପଡ଼ାର ପୂର୍ଣ୍ଣଚନ୍ଦ୍ର ରାଉତରାୟ, ଗଡ଼ମାଣତୀରର ରଙ୍କନାଥ ପାଲଟାସିଂହ, ବାଙ୍କୋଇ ଗୋଡ଼ିଆଳିର ସୁବଳ ମାର୍ଥା, କୋତଳାଙ୍ଗର ରାଜକିଶୋର ପାତ୍ର ପ୍ରମୁଖ ଆମ ଗହଣରୁ ବିଦାୟ ନେଇସାରିଛନ୍ତି । ସେମାନଙ୍କ ନିରନ୍ତର ଉଦ୍ୟମ ଯୋଗୁଁ ପାଇକ ବିଦ୍ରୋହର ମହାନାୟକ ବକ୍ସି ଜଗବନ୍ଧୁଙ୍କୁ ଶୟନେ ସପନେ ଜାଗରଣେ ମନେରଖି ଆସିଛୁ ।

୧୮୧୭ର ପାଇକ ବିଦ୍ରୋହ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ହୋଇଥିଲା । ସିପାହୀ ବିଦ୍ରୋହ ଦମନ ମାତ୍ର ଦଶ ମାସ ମଧ୍ୟରେ ହୋଇଥିବା ବେଳେ ପାଇକ ବିଦ୍ରୋହର ନେତା ବକ୍ସି ଜଗବନ୍ଧୁଙ୍କୁ ଧରିବା ପାଇଁ ଦୀର୍ଘ ଆଠବର୍ଷ ସମୟ ଲାଗିଥିଲା । ୧୮୧୭ ମାର୍ଚ୍ଚ ୨୯ରୁ ୧୮୨୫ ମେ ମାସ ୨୫ ପର୍ଯ୍ୟନ୍ତ ବକ୍ସିଙ୍କ ସଂଗ୍ରାମ ଜାରି ରହିଥିଲା । ସିପାହୀ ବିଦ୍ରୋହରେ କେବଳ ବେତନଭୋଗୀ ସିପାହୀମାନେ ସାମିଲ ଥିବାବେଳେ ପାଇକ ବିଦ୍ରୋହରେ ସବୁ ସମ୍ପ୍ରଦାୟର ଲୋକ ଯୋଗ ଦେଇଥିବାରୁ ଏହାଥିଲା ବାସ୍ତବରେ ଗଣବିପ୍ଳବ ଏବଂ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ପାଇକ ବିଦ୍ରୋହର ବ୍ୟାପକତା ଓ ଭୟାବହତାକୁ ନେଇ ବ୍ରିଟିଶ ଐତିହାସିକ ଟୟନବୀ ଲେଖିଛନ୍ତି - "It was to encounter a storm which burst with such fury as to threaten our expulsion if not from the whole of orissa at least from the territory of khurda.

This was the rebellion militia to whom the English conquest had brought little, but ruin and expulsion. ଅର୍ଥାତ୍ ବକ୍ସିଙ୍କ ପାଇକ ବିଦ୍ରୋହ ଏପରି ଭୟାନକ ରୂପ ଧାରଣ କରିଥିଲା ଯେ ଖୋର୍ଦ୍ଧା ଅଞ୍ଚଳରୁ ବ୍ରିଟିଶକୁ ବିତାଡ଼ିତ କରିବାକୁ ସେମାନଙ୍କ ସ୍ଥିତିକୁ ଏକ ଶକ୍ତ ଧକ୍କା ଦେଇଥିଲା । Robert Ker, commissioner to Governor General ୩୧ ଅଗଷ୍ଟ ୧୮୧୮ରେ ଲେଖିଥିଲେ "For a short period in occurance of 1817, a belief pervailed in almost incredible degree anongest the natives were about to be expelled.

Prof. B.C. Rai ତାଙ୍କ ପୁସ୍ତକ "Bakshi Jagabandhu- The path finder of freedom Movement of India page197ରେ ଲେଖିଛନ୍ତି- Paik revolt of 1817 appears as a mini revolution of an all India Movement- August revolution of 1942. Perhaps it was the first Indian Independence movement with true symptoms of revolutionary character with the very objective to free country"

ପାଇକ ବିଦ୍ରୋହରେ ପ୍ରତ୍ୟେକ ବର୍ଗର ଲୋକମାନେ ସାମିଲ ହୋଇଥିଲେ ମଧ୍ୟ ମୁଖ୍ୟତଃ ପାଇକମାନଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ପାଇକ ଏହି ତିନି ଅକ୍ଷର ବିଶିଷ୍ଟ ଶବ୍ଦକୁ ଉଚ୍ଚାରଣ କଲେ ମନରେ ଅପୂର୍ବ ଶିହରଣ ଖେଳିଯାଏ । ଏହି ପାଇକମାନେ ଶହ ଶହ ବର୍ଷ ଧରି ରାଜାଙ୍କଠାରୁ ନିଷ୍କର ଜାଗିରିଦାରି ଭୋଗ କରି ଯୁଦ୍ଧବେଳେ ରାଜାଙ୍କୁ ସାହାଯ୍ୟ କରୁଥିଲେ । ସେମାନଙ୍କର ମୁଖ୍ୟ ଥିଲେ ସେନାପତି ବା ବକ୍ସି । ତାଙ୍କ ଅଧୀନରେ ସାମନ୍ତ, ଦଳବେହେରା, ଦଳେଇ ଓ ଶେଷରେ ପାଇକମାନେ ଥିଲେ । ସେମାନଙ୍କଠାରେ ଥିଲା ପାଇକପଣ । ଯାହାଙ୍କର ଥାଏ ଏହି ପାଇକପଣ, ସେ ସଂକୀର୍ଣ୍ଣ ହୁଏ ନାହିଁ, କ୍ଷୁଦ୍ର ହୁଏ ନାହିଁ, ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଆଦୌ ବିଚଳିତ ହୁଏ ନାହିଁ । ସ୍ୱାର୍ଥ ନୁହେଁ, ପରାର୍ଥ ଭାବନାରେ ହୋଇଯାଏ ଦୀପ୍ତିମୟ । କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଭାଷାରେ-

"ଖଣ୍ଡ କମାଣ ଗୁଳି ବନ୍ଧୁକ
ଶୋଣିତ ଆମର ସାଥୀ
ଚାରି ହତିଆର ବନ୍ଧା ଆମେରେ
ପାଇକ ସୈନ୍ୟ ଜାତି ।
ଆମେ ଦୁର୍ମଦ, ଆମେ ଦୁର୍ଦ୍ଧର୍ଷ
ଦେଶ ଲାଗି ପଛେ ହେବୁ ନିର୍ବଂଶ
ପାରିବୁନି ରହି ଜନ୍ମେ ଜନ୍ମେ
ଶତ୍ରୁ ଚରଣ ଚାଟି ।"

ଏହି ପାଇକମାନଙ୍କ ଭିତରେ ବିଭିନ୍ନ ଜାତି ଏପରିକି ମୁସଲମାନମାନେ ମଧ୍ୟ ଥିଲେ, କିନ୍ତୁ ଅଧିକାଂଶ ଥିଲେ ଖଣ୍ଡାୟତ ।

ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଯେଉଁ ପାଇକ ବିଦ୍ରୋହ ସଂଗଠିତ ହୋଇଥିଲା ତା'ର ସୁଦୂରପ୍ରସାରୀ ପ୍ରଭାବ ପରବର୍ତ୍ତୀ ସମୟରେ ପ୍ରତିଫଳିତ ହୋଇଥିଲା । ବକ୍ସି ଜଗବନ୍ଧୁ ଯେପରି ଅସହଯୋଗ ନୀତି ଅବଲମ୍ବନ କରି ଦୀର୍ଘ ଆଠବର୍ଷ କାଳ ଇଂରେଜ ସରକାରଙ୍କ ମନରେ ଭୟ ଓ ଆତଙ୍କ ସୃଷ୍ଟି କରିଥିଲେ ତାହା ପରବର୍ତୀ ସମୟରେ ମହାତ୍ମା ଗାନ୍ଧୀଙ୍କୁ ପ୍ରଭାବିତ କରିଥିଲା । ଫଳରେ ମହାତ୍ମା ଗାନ୍ଧୀ ବକ୍ସିଙ୍କ ଅସହଯୋଗ ନୀତିକୁ ଅବଲମ୍ବନ କରି ଭାରତର ସ୍ୱାଧୀନତା ପାଇଁ ତାହା ପ୍ରୟୋଗ କରିଥିଲେ । ଲୁଚିଛପି ଗରିଲା ଯୁଦ୍ଧ କରି ବକ୍ସି ଯେଭଳି ଇଂରେଜ ସରକାରଙ୍କୁ ଭୀତତ୍ରସ୍ତ କରାଇଥିଲେ ତାହାର ତୁଳନା ନାହିଁ । ବକ୍ସିଙ୍କ ବୀରତ୍ୱ ଗାଥାକୁ ମନେ ପକାଇ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କୃତ ବିଶିଷ୍ଟ ସାହିତ୍ୟିକ ଡ. କୁଞ୍ଜବିହାରୀ ଦାଶ 'ବକ୍ସି ଜଗବନ୍ଧୁ ବିଦ୍ୟାଧର' ଶୀର୍ଷକ ଏକ ଉଦ୍‌ବୋଧନ ମୂଳକ ବୈପ୍ଳବିକ କବିତାରେ ନିମ୍ନମତେ  ରଚନା କରିଛନ୍ତି–

"ଭୈରବ ରବେ ଅଶନି ସେଦିନ
ଘୋଷିଲା ଖୋରଧା ପ୍ରାନ୍ତରେ,
ନିଜ ବୈଭବ ତେଜ ଗୌରବ
ମଂଦ୍ରମଧୁର ମନ୍ତ୍ରରେ ।
ସୁପ୍ତ ପାଇକ ଦୃପ୍ତ ଚମକେ
ଦୀପ୍ତ ହେଲେ ସେ ଇଙ୍ଗିତେ,
ବରୁଣେଇ ଗୁହା ଗର୍ଜି ଉଠିଲା
'ଜୟ ଉତ୍କଳ ସଙ୍ଗୀତେ'।
ଛିନ୍ନ କର ହେ ବନ୍ଧନ
ଭିନ୍ନ କର ହେ ଛନ୍ଦନ,
ସ୍ୱାଧୀନତା ଲଭେ କେଉଁ ଜାତି କେବେ କରି ଶିଶୁସମ କ୍ରନ୍ଦନ ?

ଅତ୍ୟାଚାରର ଝଟିକା ଗରଜେ
ଧୈର୍ଯ୍ୟ ବରଜେ ଅନ୍ତର
ଶହୀଦ ରକତେ ଲୋହିତ କରହେ
ଖୋର୍ଦ୍ଧାର ବନ ପ୍ରାନ୍ତର ।
ଧନ୍ୟ ହେଉ ଏ ଧରଣୀର ଧୂଳି

ସାହସୀ ଶୋଣିତ ବିନ୍ଦୁରେ,
କାଳର ଲଲାଟ ଶୋଣିମା କର ହେ
ପାଇକ କୀରତି ସିନ୍ଦୁରେ ।
ବିପ୍ଳବ ଚିର ଗୌରବ
ନଲୋଡୁ ଶରଣ କାମ୍ୟ ମରଣ ବିଜୟ ବରଣ ବୈଭବ ।

ମୃତ୍ୟୁ ବୀରର ମୁକ୍ତି ଜୀବନ
ନସହେ ବିଦେଶୀ ଲାଞ୍ଛନା.
ହୀନ ଶାସନର ସୁନାଶୃଙ୍ଖଳ-
ବନ୍ଧନ ଲବେ ବାଂଛନା ।
ଜାତୀୟ ଦେବତା ବଜ୍ରବାରତା
ଇତିହାସ କର ରଞ୍ଜନ,
ଭାଙ୍ଗିଛି ପଛେ ନଇଁ ନାହିଁ ଦିନେ
ଓଡ଼ିଆ ବଇରି ଗଞ୍ଜନ ।
ଶତ୍ରୁ ଗରବ ପର୍ବତ
ଧ୍ୱଂସ କର ହେ ଜାଗ୍ରତ,
ଭସ୍ମ କର ହେ ବଇରି ଶାସନ ରଖି ଗଜପତି ଇଜ୍ଜତ ।
ହିମାଚଳ ସାଥେ କୁମାରିକା ଯା'ର
କରୁଥିଲା ପଦ ବନ୍ଦନ,
ଗର୍ବ ଭରେ ଯେ ବୋଲୁଥିଲା ଦେହେ
ବଇରି, ରକତ ଚନ୍ଦନ,
ବିଶ୍ୱ ମୁକୁଟେ କୀର୍ତ୍ତିକଳା ଯା'
ଭାସ୍କର ସମ ଭାସ୍ୱର,
କିଙ୍କର ସେଇ ତସ୍କର ପଦେ
ଦୁର୍ଗତି ଅତି ନିସ୍ୱର,
ଜାଗ ଦୁର୍ଜୟ ଦୁର୍ବାର
ଅରି ଧୂମକେତୁ ସର୍ଦ୍ଦାର
ରଣଭୂମେ କେବେ ନତ ହୋଇନାହିଁ ଉନ୍ନତ ଶିର ଖୋର୍ଦ୍ଧାର ।
ପରାଧୀନତାର କଳଙ୍କ-ଜଳୁ,
ମାତୃଭୂମିକୁ ଉଦ୍ଧର,
ଶିରେ ଭଗବାନ, କରେ କରବାଳ

ହୃଦୟେ ସାହସ ସମ୍ବଳ ।
ବିଘ୍ନେ ଦିଅ ହେ ରକତ ଅର୍ଘ୍ୟ
ବିପଦେ ଦିଅହେ ସମ୍ମାନ,
ଦୁଃଖେ ଆଦର ଯାତନାରେ କର
ଏ ଜାତିର ହେବ ଉତ୍‌ଥାନ ।
କନ୍ୟା ନଡ଼ରୁ ଯୌବନ,
ଝଙ୍କାରେ ଚାଲୁ ସ୍ୟନ୍ଦନ,
ଦୁର୍ଗମ ଗିରି ଲଙ୍ଘିଲେ ବୀର ରହିବ କି ଜାତି ବନ୍ଧନ ।"(୫)

ପାଇକ ବିଦ୍ରୋହର ମହାନାୟକ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବର୍ଷ ବର୍ଷ ବ୍ୟାପୀ ଯେଉଁ ଆନ୍ଦୋଳନ ହୋଇଥିଲା, ତାହା ସହିତ ୧୮୦୪ ମସିହାରେ ଯେଉଁ ଇଂରେଜ ବିରୋଧୀ ମନୋଭାବ ସୃଷ୍ଟି ହୋଇଥିଲା ତାହା ସହିତ ଏହାକୁ ସଂଲଗ୍ନ କରିବାକୁ କେହି କେହି ପ୍ରୟାସ କରିଛନ୍ତି । ଏହାକୁ ମଧ୍ୟ ୧୮୦୪ ମସିହା ରାଜ ବିଦ୍ରୋହ କୁହାଯାଉଛି । ବାସ୍ତବରେ ୧୮୧୭ ପାଇକ ବିଦ୍ରୋହ ନେଇ ଏହାର କୌଣସି ସମ୍ପର୍କ ନାହିଁ । ୧୮୦୬ରୁ ୧୮୧୬ ମଧ୍ୟରେ ଇଂରେଜମାନେ ଥରକୁ ଥର ଛ'ଥର ବନ୍ଦୋବସ୍ତ କରି ବହୁ ପରିମାଣରେ ଖଜଣା ବୃଦ୍ଧି କଲେ । ପାଇକମାନଙ୍କ ନିଷ୍କର ଜାଗିରୀ ଉପରେ କରଧାର୍ଯ୍ୟ ହେଲା । ଲୁଣମାରି ପେଟ ପୋଷୁଥିବା ପ୍ରଜାମାନଙ୍କ ଉପରେ ଟିକସ୍ ବସିଲା । ବହୁ କାଳରୁ ରାଜା ରାଜୁଡ଼ା ଅମଳରୁ ଥିବା ଜମିଦାରମାନଙ୍କୁ ଉଚ୍ଛେଦ କରାଯାଇ ନୂଆ ଜମିଦାର ସୃଷ୍ଟି ହେଲା । ବିଭିନ୍ନ କାରଣରୁ ଜନଅସନ୍ତୋଷ ବୃଦ୍ଧି ପାଇ ଏହା ୧୮୧୭ରେ ବକ୍ସିଙ୍କ ନେତୃତ୍ୱରେ ସଂଗଠିତ ହୋଇ ବିଦ୍ରୋହର ରୂପ ନେଲା । ଏଥିରେ ପାଇକଙ୍କ ବ୍ୟତୀତ ପ୍ରତ୍ୟେକ ବର୍ଗର ଲୋକ ସାମିଲ ହେବାରୁ ଏହା ଗଣ ବିପ୍ଲବର ଆଖ୍ୟା ପାଇଲା ।

୧୮୦୪ ଖୋର୍ଦ୍ଧା ରାଜ ବିଦ୍ରୋହ ୧୮୧୭ ପାଇକ ବିଦ୍ରୋହଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଇଂରେଜ ସୈନ୍ୟମାନେ ୧୮୦୪ ନଭେମ୍ବର ୨୬ ତାରିଖ ଦିନ ମୁକୁନ୍ଦପ୍ରସାଦ ଆମ୍ବ ତୋଟାଠାରେ ତମ୍ବୁ ଛାଉଣୀ ପକାଇ ରହିଲେ। କଟକରୁ ତିନିହାଜର ସୈନ୍ୟ ଆସିଥିଲେ । ପରେ ମାଡ୍ରାସ ରେଜିମେଂଟରୁ ସାତ ହଜାର ସୈନ୍ୟ ଆସି ଯୋଗଦେଲେ । ସେଥିମଧ୍ୟରେ ସାତଶହ ଇଉରୋପିଆନ ସୈନ୍ୟ ଥିଲେ । ମୋଟ୍ ସୈନ୍ୟଙ୍କ ସଂଖ୍ୟା ଦଶହଜାର ଥିଲା। ନଭେମ୍ବର ୨୬ ତାରିଖରୁ ୩୦ତାରିଖ ପର୍ଯ୍ୟନ୍ତ ସେମାନେ ଆମ୍ବତୋଟା ତଳ ଶିବିରମାନଙ୍କରେ ଥିଲେ । ଖୋର୍ଦ୍ଧା ରାଜା ଯଦି ଶକ୍ତିଶାଳୀ ଥାଆନ୍ତେ ଇଂରେଜ ସୈନ୍ୟଙ୍କୁ ଆକ୍ରମଣ କରିପରିଥାଆନ୍ତେ ! ମାତ୍ର ଇଂରେଜମାନଙ୍କ ବିପୁଳ ସୈନ୍ୟ ସମାବେଶ ଦେଖି କେବଳ ଗଡ଼ ଭିତର ପାର୍ଶ୍ୱରେ ଆକ୍ରମଣର ସମ୍ମୁଖୀନ ହେବା ପାଇଁ ଅଳ୍ପ ସଂଖ୍ୟକ ରାଜାଙ୍କ ସୈନିକ ଅପେକ୍ଷା କରିଥିଲେ ।

"୧୮୦୪ ଡିସେମ୍ବର ୧ ତାରିଖରୁ ୩ ତାରିଖ ପର୍ଯ୍ୟନ୍ତ ତିନିଦିନ ଧରି ଇଂରେଜମାନେ ଗଡ଼କୁ ଚାରିଦିଗରୁ ଆକ୍ରମଣ କଲେ । ବାହାର ପ୍ରାଚୀର ନିକଟରେ ବାର ପାଉଣ୍ଡିଆ ବ୍ୟାଟେରୀ ୪ଟା, ଛ' ପାଉଣ୍ଡିଆ ବ୍ୟାଟେରୀ ହାଓ୍ୱାଜର ପ୍ରଭୃତି ଆଧୁନିକ ଅସ୍ତ୍ରଶସ୍ତ୍ରମାନ ଓ ତୋପମାନ ଖଞ୍ଜି ସେଥିରୁ ଅନବରତ ଗୁଳି ବର୍ଷଣ କଲେ । ଏହି ତିନିଦିନର ତୋପମାଡ଼ରେ ପାଚେରିର ଗୋଟିଏ ପାଖ କଣା ହୋଇଯାଇଥିଲା । ସେହି କଣାବାଟ ଦେଇ ମେଜର ଫ୍ଲେଚର ଓ ଅନ୍ୟମାନେ ପ୍ରଥମେ ଗଡ଼ରେ ପଶିଲେ । ପରେ କର୍ଣ୍ଣେଲ ହାରକୋର୍ଟ ଓ ଦଶହଜାର ସୈନ୍ୟ ପାଚେରି ଭାଙ୍ଗି ପଶିଲେ । କିନ୍ତୁ ତିନି ଦିନର ତୋପ ମାଡ଼ ମଧ୍ୟରେ ନାବାଳକ ରାଜା ଓ ତାଙ୍କର ପରାମର୍ଶଦାତା ଜୟୀ ରାଜଗୁରୁ ପ୍ରାଣଭୟରେ ଗୁପ୍ତବାଟେ ବାହାରି ଜଙ୍ଗଲକୁ ପଳାଇ ଯାଇଥିଲେ । (୬) ୪ର୍ଥ ଦିନ ଅର୍ଥାତ୍ ଡିସେମ୍ବର ୪ ତାରିଖ ଦିନ ଗଡ଼କୁ ଧ୍ୱଂସ କରି ଦିଆଗଲା । "On 4th December 1804 the fort of Khurda was demolished and the Raja tried to escape, but he was captured on 3rd January 1805 and was sent as a prisoner first to cuttack and later to Midnapore. (7)

ଖୋର୍ଦ୍ଧା ଦୁର୍ଗ ପତନ ପରେ ରାଜା ଓ ଜୟୀ ରାଜଗୁରୁ ପ୍ରାଣ ରକ୍ଷା ପାଇଁ ଜଙ୍ଗଲକୁ ପଳାୟନ କଲେ ଓ ପରେ ଧରାପଡ଼ିଲେ । ଦୁର୍ଗ ମଧ୍ୟରେ ଥିବା ତିନିଶହ ପାଇକ ସୈନ୍ୟଙ୍କ ମଧ୍ୟରୁ ଅଧିକାଂଶ ତୋପମାଡ଼ରେ ଜଳିପୋଡ଼ି ନିହତ ହେଲେ । ଇଂରେଜମାନଙ୍କ ଆକ୍ରମଣକୁ ସମ୍ମୁଖୀନ ହେବା ପ୍ରସ୍ତୁତ ଥିବା ୬୬ ବର୍ଷ ବୟସ୍କ ଜୟୀ ରାଜଗୁରୁ କିଭଳି ଲୁଚି ପଳାଇଲେ ମୁରଲୀଧର ପ୍ରଧାନଙ୍କ ଅନ୍ୱେଷଣ ପୁସ୍ତକର ୧୩୮ ପୃଷ୍ଠାରେ ଉଲ୍ଲେଖ ଅଛି । ସେ ଡମଣଭୂଇଁ, ଓଗାଳପଡ଼ା, କୁରୁମ ମୁଣ୍ଡିଆ ଦେଇ ନିଧିପୁରରେ ପହଞ୍ଚି ତା'ର ପଶ୍ଚିମ ତରଫ ଏକ ଘଂଚ ଜଙ୍ଗଲରେ ରହିଲେ । ସେଠାରୁ ବାଳଝାଡ଼ି ଗ୍ରାମର ବାହିନୀପତିଙ୍କ ଘରେ ଆଶ୍ରୟ ନେଲେ । ବାଳଝାଡ଼ିରୁ ରଣପୁର ଅଂଚଳକୁ ଚାଲିଯିବାକୁ ଯୋଜନା କରି ରାତ୍ରରେ ଗଲାବେଳେ ଧରାପଡ଼ି ଗିରଫ ହେଲେ । ତାଙ୍କ ବିରୋଧରେ ବିଚାର କରାଯାଇ ୧୮୦୬ ଡିସେମ୍ବର ୬ ତାରିଖ ଦିନ ତାଙ୍କୁ ବରଗଛର ଦୁଇଟି ଡାଳରେ ଦୁଇ ଗୋଡ଼ ବାନ୍ଧି ଫାଶୀ ଦିଆଗଲା । ଏଭଳି ଜଘନ୍ୟ ମୃତ୍ୟୁଦଣ୍ଡ ପ୍ରତ୍ୟେକଙ୍କ ମନରେ ଗଭୀର ଆଘାତ ଆଣିଥିଲା । ସେ ପ୍ରାଣବଳୀ ଦେଇ ଆମର ଶହୀଦ ହେଲେ । କବିଙ୍କ ଭାଷା 'ଜଇଆ ପଛେ ଜୀବନ ଦେଲା, ନୁଆଁଇ ନାହିଁ ମଥା" କାଳ କାଳକୁ କୀର୍ତ୍ତି ହୋଇ ରହିବ ।

ଜୟୀ ରାଜଗୁରୁ ଭାରତର ପ୍ରଥମ ଶହୀଦ ବୋଲି କେତେକ ଚିତ୍ରଣ କରିଥାନ୍ତି । ତେବେ ସେ ଭାରତର କିମ୍ବା ଓଡ଼ିଶାର ପ୍ରଥମ ଶହୀଦ ନୁହଁନ୍ତି । ଇତିହାସର ପୃଷ୍ଠା ଲେଉଟାଇଲେ ଆମେ ଜାଣିପାରିବା ଯେ, ଇଂରେଜମାନେ ଗୋଟିକ ପରେ ଗୋଟିଏ

ରାଜ୍ୟ ଜୟ କରି ଖୋର୍ଦ୍ଧାରେ ପହଞ୍ଚିଲେ । ରାଜ୍ୟ ବିଜୟ ତାଲିକାରେ ଖୋର୍ଦ୍ଧା କିଲ୍ଲା ୯୬୧ ତମ ରାଜ୍ୟ । ଏହା ପୂର୍ବରୁ ସେମାନେ ୯୬୦ଟି ରାଜ୍ୟ ଜୟ କରିସାରିଥିଲେ । ଇଂରେଜମାନଙ୍କ ସହ ସଂଗ୍ରାମ କରି ମୁର୍ଶିଦାବାଦର ନବାବ ସିରାଜଉଦ୍ଦାଲା, ମହୀଶୂରର ମହାରାଜା ଟିପୁ ସୁଲତାନ ଓ ତୁମୁଳ ସଂଗ୍ରାମ କରିଥିବା କେରଳର ଥିରୁଥାମ୍ପିଙ୍କୁ ନିଜ ନିଜ ଅଞ୍ଚଳରେ ଭାରତର ପ୍ରଥମ ଶହୀଦ ରୂପେ ଚିତ୍ରଣ ହୋଇଛନ୍ତି । ଏହି ସମସ୍ତ ଘଟଣାର ବହୁ ପରେ ଖୋର୍ଦ୍ଧା ରାଜ ବିଦ୍ରୋହ ହୋଇଥିଲା । ଏଣୁ ଜୟୀ ରାଜଗୁରୁ ଭାରତର ପ୍ରଥମ ଶହୀଦ ନୁହଁନ୍ତି, ଏପରିକି ଓଡ଼ିଶାର ମଧ୍ୟ ପ୍ରଥମ ଶହୀଦ ନୁହଁନ୍ତି । ୧୮୦୪ ଖୋର୍ଦ୍ଧା ରାଜ ବିଦ୍ରୋହ ପୂର୍ବରୁ ଦକ୍ଷିଣ ଓଡ଼ିଶାରେ ଇଂରେଜ ବିରୋଧୀ ରାଜ ବିଦ୍ରୋହମାନ ସଂଘଟିତ ହୋଇଥିଲା । ୧୮୦୦ ମସିହା ନଭେମ୍ବର ମାସ ୧୮ ତାରିଖରେ ଘୁମୁସର ରାଜା ଶ୍ରୀକର ଭଞ୍ଜ, ଶେରଗଡ଼ ରାଜା ଅଦୈତ ସିଂହଦେଓ, ଖେମୁଣ୍ଡି ରାଜା ଜଗନ୍ନାଥ ନାରାୟଣ ଦେଓ ଏବଂ ବଡ଼ଖେମୁଣ୍ଡି ରାଜା ପଦ୍ମନାଭ ଦେବ ଓରଫ ମଣିଦେଓ ଶେରଗଡ଼ ନିକଟ ଏକ ଘାଟି ଉପରେ ଇଂରେଜ ବାହିନୀ ଉପରେ ତୁମୁଳ ଆକ୍ରମଣ କଲେ । କିନ୍ତୁ ଇଂରେଜ ବାହିନୀର ଏକ ତୋପ ମାଡ଼ରେ ଶେରଗଡ଼ ରାଜା ଅଦ୍ୱେତ ସିଂହଦେଓଙ୍କ ମସ୍ତକ ଛିନ୍ନ ବିଚ୍ଛିନ୍ନ ହୋଇଯାଇଥିଲା । ସେ ଶହୀଦ ହେଲେ । ତାଙ୍କୁ କୁହାଯାଏ ଓଡ଼ିଶାର ପ୍ରଥମ ଶହୀଦ । ୧୮୦୦ ମସିହା ପୂର୍ବରୁ ଗଞ୍ଜାମ ଜିଲ୍ଲାରେ ୧୭୬୫ରେ ଖେମୁଣ୍ଡି, ପାଲୁର, ମହୁରୀ, ବାଲେଶ୍ୱର (୧୭୯୨) ଅଞ୍ଚଳରେ ଇଂରେଜ ବିରୋଧୀ ସଂଘର୍ଷରେ ଅନେକ ଶହୀଦ ହୋଇଛନ୍ତି । ଏଣୁ ଜୟୀ ରାଜଗୁରୁଙ୍କୁ ଭାରତ କିମ୍ବା ଓଡ଼ିଶାର ପ୍ରଥମ ଶହୀଦ ଭାବେ ଚିତ୍ରଣ କରିବା ନିଜ ଅଜ୍ଞତାର ପରିଚୟ ଦେବା ବ୍ୟତୀତ ଅନ୍ୟ କିଛି ନୁହେଁ । ଇଂରେଜ ସୈନ୍ୟଙ୍କ ତୋପମାଡ଼ ଓ ଅଗ୍ନି ସଂଯୋଗରେ ଗଡ଼ ମଧ୍ୟରେ ଥିବା କେତେକ ପାଇକ ସୈନ୍ୟ ଜଳିପୋଡ଼ି ମୃତ୍ୟୁବରଣ କଲେ । ସେମାନେ ଜୟୀ ରାଜଗୁରୁଙ୍କ ପୂର୍ବରୁ ଶହୀଦ ହୋଇଥିଲେ । ଜୟୀ ରାଜଗୁରୁ ମା' ବରୁଣେଇଙ୍କ ଅଭୟବର ବଳରେ ଇଂରେଜ ବାହିନୀଙ୍କୁ ପରାସ୍ତ କରିବା ପାଇଁ ଯୋଜନା କରିଥିଲେ । କିନ୍ତୁ କୌଣସି ବିଶ୍ୱାସଘାତକର ମନ୍ତ୍ରଣାରେ କଳା ଷଣ୍ଢ ବଳୀ ଦେଇ ତୋପରେ ଷଣ୍ଢର ରକ୍ତ ଦେଇ ଗଡ଼ର ପାଚେରି ଭାଙ୍ଗିବାକୁ ଇଂରେଜ ସେନ୍ୟବାହିନୀ ସମର୍ଥ ହୋଇଥିଲେ । ବାରବାଟୀ ଦୁର୍ଗ ଭାଙ୍ଗି ଗୋଟିଏ ଦିନରେ ସେଠାରେ ପ୍ରବେଶ କରିଥିଲେ ହେଁ ଖୋର୍ଦ୍ଧା ଦୁର୍ଗରେ ପ୍ରବେଶ କରିବାକୁ ତିନିଦିନ ସମୟ ଲାଗିଥିଲା । ଦେବୀଙ୍କ ଆଶୀର୍ବାଦରୁ ଗଡ଼ ପାଚେରି ଭାଙ୍ଗିବା ବିଳମ୍ବିତ ହୋଇଥିଲା ବୋଲି କେହି କେହି ମତ ଦିଅନ୍ତି । କିନ୍ତୁ ଏହାର ଐତିହାସିକ ସତ୍ୟତା ନାହିଁ । ଏହା କେବଳ କିମ୍ବଦନ୍ତୀ ।

ପାଇକ ବିଦ୍ରୋହକୁ ନେଇ ଇଂରେଜ ଐତିହାସିକ ବଙ୍ଗଳା ଐତିହାସିକ, ଓଡ଼ିଆ ଐତିହାସିକ ତଥା ଓଡ଼ିଶା ଷ୍ଟେଟ୍ ଆର୍କାଇଭିସରେ ବହୁ ପ୍ରାମାଣିକ ତଥ୍ୟ ଉପଲବ୍ଧ ହୋଇଥିବା

ବେଳେ ମଧୁସୂଦନ ବିପ୍ରଙ୍କ 'ଫିରିଙ୍ଗି କଳି ଭାରତ'ରେ କିଛି ବିଷୟ ଉଲ୍ଲେଖ ଅଛି । ଗଡ଼ ସାନପୁଟର ମଧୁସୂଦନ ବିପ୍ର ୧୮୨୭ ମସିହାରେ ଘଟିଥିବା ତାପଙ୍ଗ ଦଳବେହେରାଙ୍କ ସହ ଇଂରେଜମାନଙ୍କ ଯୁଦ୍ଧ ସମୟର ପ୍ରତ୍ୟକ୍ଷଦର୍ଶୀ ଥିବାରୁ ଏହି ଏହି ଯୁଦ୍ଧର ବିଶଦ ବର୍ଣ୍ଣନା କରିଛନ୍ତି । ଏହା ତାଳପତ୍ର ପୋଥିରେ ଲେଖା ହୋଇଥିବାରୁ ତାକୁ ଉଦ୍ଧାର କରି ଓଡ଼ିଶା ସଂଗ୍ରହାଳୟର ତତ୍କାଳୀନ ଅଧିକ୍ଷକ ଡ. ଅର୍ଜୁନ ଯୋଶୀ ଏହା ପୁସ୍ତକ ଆକାରରେ ପ୍ରକାଶ କରିଥିଲେ । ପରବର୍ତ୍ତୀ ସମୟରେ ମନ୍ଦାରବସ୍ତ ଲୋକାପାଳର ଗବେଷକ କୃପାସିନ୍ଧୁ ବିଶ୍ୱାଳ କଟକ ବିନୋଦ ବିହାରୀ ଷ୍ଟୁଡେଂଟସ୍ ଷ୍ଟୋର ଦ୍ୱାରା ଏହା ପୁନଃପ୍ରକାଶ କରାଇଛନ୍ତି । ଫିରିଙ୍ଗି କଳି ଭାରତ ପୋଥି ପୁରୀ ଜିଲ୍ଲା ଗଡ଼ ସାନପୁଟର କବି ମଧୁସୂଦନ- ବିପ୍ର ୧୮୩୪ ମସିହାରେ ପୂର୍ଣ୍ଣାଙ୍ଗ କରିଥିଲେ । ଦଳବେହେରା ମାଧବଚନ୍ଦ୍ର ରାଉତରାୟ ଇଂରେଜମାନଙ୍କ ସହ କରିଥିବା ଯୁଦ୍ଧର ବିବରଣୀ କବି ପ୍ରତ୍ୟକ୍ଷଦର୍ଶୀ ଭାବେ ବର୍ଣ୍ଣନା କରିଛନ୍ତି ।

'ଫିରିଙ୍ଗି କଳି ଭାରତ' ଭଳି ଓଡ଼ିଆ ସାହିତ୍ୟରେ ଅନେକ ଯୁଦ୍ଧକାବ୍ୟ ଦେଖିବାକୁ ମିଳେ । ସେଗୁଡ଼ିକ ହେଲା କାଞ୍ଚିକାବେରୀ, ସମର ତରଙ୍ଗ, ବୁଢ଼ାପଙ୍କ ଯୁଦ୍ଧ, ପାଇକ ଖୋଦା, ଯୁଦ୍ଧ ଗୀତି, ତେଣ୍ଟାପସି ଯୁଦ୍ଧ, ଖଲିକୋଟ ଯୁଦ୍ଧ, ରଣତରଙ୍ଗ, ଭଞ୍ଜବିହାର, ହରିହର ଚତୁରଙ୍ଗ ଆଦି । ଏହି ଯୁଦ୍ଧ କାବ୍ୟମାନଙ୍କରୁ ସେତେବେଳେ ବ୍ୟବହାର କରାଯାଉଥିବା ଅସ୍ତ୍ରଶସ୍ତ୍ରମାନଙ୍କ ସମ୍ବନ୍ଧରେ ଜଣାପଡ଼େ । 'ସମରତରଙ୍ଗ' ଯୁଦ୍ଧ କାବ୍ୟରୁ ଜଣାପଡ଼େ ଯେ ସେତେବେଳେ ବ୍ୟବହାର କରାଯାଉଥିବା ଅସ୍ତ୍ରଶସ୍ତ୍ର ମଧ୍ୟରେ ଗୁଣ୍ଡ (ଦେଶଜ ତୋପ), ବିଶକଟ ଗୁଣ୍ଡ (ଲମ୍ବ ତୋପ- ଏହା ତିନି ଯୋଡ଼ା, ଚକ ବାଲା ଗାଡ଼ିରେ ନିଆଯାଏ), ଜଜାଲ (ଛୋଟ ତୋପ), ଜମ୍ବୁରା (ଏକ ଶ୍ରେଣୀର ବଡ଼ ବନ୍ଧୁକ) ପେଟକାଟା (ସାତହାତି ବନ୍ଧକ) ଶରନାଳ ବାଣ, (ଏକ କ୍ଷୁଦ୍ର ତୋପ), ଚଡ଼କ ନଳୀ (ପଥର ବସା ନଳୀ - Flint gun'), ଢକ୍କୁଣ (ଏକ ପ୍ରକାର ଭୂଷିବା ଯନ୍ତ୍ର), ବାଙ୍କ କଟାରୀ (ବାଙ୍କଛୁରୀ) ସାବେଳୀ, ସାଞ୍ଜ, କମାଣ, ଧନୁ, ତୁଣୀର (ଶର ରଖିବା ମୁଣି, ଗୁପ୍ତି, ଟାଙ୍ଗି, ଚକ୍ର ଛୋରୀ, ବାଡ଼ି ବନ୍ଧୁକ, ଭାଲ୍ଲା, ବର୍ଚ୍ଛା, ତରବାରି, ପଟ୍ଟା (Gaunt let) ଧୂପ (One edged sword), ଖଡଗ୍ (Double edged sword), ବଦଉ (Roughly a shield with piercing appendage) ଫାର୍ଶା, କଟାରୀ । ଯୁଦ୍ଧ ଅସ୍ତ୍ର ଭଳି ସମର ତରଙ୍ଗରେ ଯୁଦ୍ଧ ବାଦ୍ୟଗୁଡ଼ିକର ନାମ ଉଲ୍ଲେଖ ଅଛି । ତାହାହେଲା- ଧମସା, ଘସା, ଢୋଲ, ଡମ୍ଫ ନାଗରା, ନାଗରା, ମହୁରୀ, ଢୋଲକି, ସ୍ୱର, ଚାଙ୍ଗୁ, ତେଲଙ୍ଗୀ ବାଜା, ଭେରୀ, ରଣସିଙ୍ଗା, ତୁରୀ, ମହୁତୁଙ୍ଗ, କରତାଳ ଆଦି ('ସମର ତରଙ୍ଗ'ର ପ୍ରଥମ ଛାନ୍ଦ) ।

ଓଡ଼ିଶା ଏକ ସଂଗ୍ରାମଭୂମି ଥିବା ଇତିହାସରୁ ଜଣାଯାଏ । କିନ୍ତୁ ଓଡ଼ିଶାର ସୈନ୍ୟ ସାମନ୍ତ, ଯୁଦ୍ଧ କୌଶଳ, ଯୁଦ୍ଧଜୟ ପ୍ରଭୃତି ସମ୍ପର୍କରେ ମିଳିଥିବା ପୁସ୍ତକ ବା ପୋଥି

ପର୍ଯ୍ୟାପ୍ତ ନୁହେଁ । ଏ ଦିଗରେ ସରକାରୀ ଓ ବେସରକାରୀ ସର୍ବସ୍ତରରେ ଉଦ୍ୟମ ମଧ୍ୟ ଆନ୍ତରିକ ଓ ବ୍ୟାପକ ହୋଇନାହିଁ । ଇଂରେଜ ରାଜୁତିରେ ଓଡ଼ିଶାର ସାମରିକ କାର୍ଯ୍ୟକଳାପ ଉପରେ ଦୃଢ଼ କଟକଣା କାରଣରୁ ହୁଏତ ସାମରିକ ବିଭବ ଓ ଯୁଦ୍ଧ ସମ୍ପର୍କୀୟ ବହୁ ସାହିତ୍ୟ ବିଲୁପ୍ତ ହୋଇଥିବାର ଅନୁମାନ। ଏହା ବ୍ୟତୀତ ପ୍ରାକୃତିକ ବିପର୍ଯ୍ୟୟ ବଢ଼ି-ମରୁଡ଼ି ଓ ଘରପୋଡ଼ିରେ ଯେ ଏପରି ଅନେକ ଗ୍ରନ୍ଥ ଲୋପ ପାଇଅଛି ଏଥିରେ ସନ୍ଦେହ ନାହିଁ ।

ଆବୁଲ-ଫାଜଲ ତାଙ୍କ 'ଆଇନ୍-ଇ-ଆକବରୀ' ଗ୍ରନ୍ଥରେ ଓଡ଼ିଶା ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି । ଭାରତର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଓଡ଼ିଶାରେ ଅଧିକ ସଂଖ୍ୟକ ଗଡ଼ଥିବା ଓ ଗଡ଼ମାନଙ୍କର ସୁରକ୍ଷା ପାଇଁ ପାଇକ ସଂଖ୍ୟା ଅଧିକ ଥିବା ଉଲ୍ଲେଖ କରିଛନ୍ତି । ସେ ଉତ୍କଳ ରାଜ୍ୟର ଉତ୍ତରରେ ଥିବା ମେଦିନୀପୁର ସରକାରଠାରୁ ଆରମ୍ଭ କରି, ଦକ୍ଷିଣରେ ଥିବା ରାଜମହେନ୍ଦ୍ରୀ ସରକାର ପର୍ଯ୍ୟନ୍ତ ଯେତେ ଯେତେ ଗଡ଼ ଥିଲା ସେଥିମଧ୍ୟରୁ କେତେକ ପ୍ରଧାନ ପ୍ରଧାନ ଗଡ଼ର ନାମ ମଧ୍ୟ ଉଲ୍ଲେଖ କରିଛନ୍ତି । ସେଥିମଧ୍ୟରେ ମେଦିନୀପୁର ସରକାରର ବାଂଶଡ଼ା, କାଳକାଶି, ପର୍ବତା, କୁତବପୁର, ମେଦିନୀପୁର, ନାରାୟଣପୁର, ଜଳେଶ୍ୱର ସରକାରର କୁରୁସାଗର, କେଦାରଖଣ୍ଡ, ବାରଓ୍ୱା, ଭଦ୍ରକ ସରକାରର ଭଦ୍ରକ, ସାହନେସ୍ତ, କାଇମଲ, କଟକ ସରକାରର ଆଠଗଡ଼, ପର୍ବଦ୍ୱାର, ବାରଙ୍ଗ ବିଜୟନଗର, ଛତିଶକୁଦ, ହାଜିପୁର, ଦକ୍ଷିଣଦ୍ୱାର, କୋଟଦେଶ, କଟକ ବାରଣାସୀ, କୋଟଗଡ଼ ଆଦି ସ୍ଥାନ ପାଇଛି । ଏହାଛଡ଼ା କଳିଙ୍ଗ ଦଣ୍ଡପାଟ ସରକାର ଓ ରାଜମହେନ୍ଦ୍ରୀ ସରକାରରେ ଅନେକ ଦୁର୍ଗମାନ ଥିଲା । ଖୋର୍ଦ୍ଧାରାଜାଙ୍କ ଅଧୀନରେ ଥିବା ୩୧ଟି ଜମିଦାରୀରେ ଥିବା ୧୨୯ଟି କିଲ୍ଲା ବା ଗଡ଼ ମଧ୍ୟ ଥିଲା ।"

"ପଶ୍ଚିମ ଓଡ଼ିଶାରେ ମଧ୍ୟ ବହୁ ଗଡ଼ମାନ ଥିଲା । ଏଠାରେ ଅଠରଗଡ଼ ପ୍ରଥା ପ୍ରଚଳିତ ଥିଲା । କଳାହାଣ୍ଡି ଜିଲ୍ଲାର ଅଠରଗଡ଼ ହେଲା- ଜୁନାଗଡ଼, ଭୁନ୍ଦେଶିର, ଅସୁରଗଡ଼, ଦେହଗାଁ, କୋକସରା, ଥୁଆମାଳ, ଦେପୁର, ମଣ୍ଡାବିଶି, କାଶୀପୁର, ମହୁଲପାଟଣା, ଚନ୍ଦ୍ରଗିରି, ବିଷମଗିରି, ବାଦପୁର, ଇଙ୍ଗିଗଡ଼, ଭୂର୍ତ୍ତି, କଲରାପାଟ ଓ ମଦନପୁର । ସମ୍ବଲପୁର ଅଞ୍ଚଳର ଅଠରଗଡ଼ ହେଲା ସମ୍ବଲପୁର, ପାଟଣା, ସୋନପୁର, ବାମଣ୍ଡା, ରେଢ଼ାଖୋଲ, ଗାଙ୍ଗପୁର, ବୌଦ, ଆଠମଲ୍ଲିକ, ଫୁଲଝର, ବଣାଇ, ରାଇଗଡ଼, ଚନ୍ଦ୍ରପୁର, ବିନ୍ଦ୍ରା, ନଉଗଡ଼, ଖଡ଼ିଆଳ ଓ ବୋଡା ସମ୍ବର ।

ଇଂରେଜ ଶାସନ କାଳରେ କଟକ ଜିଲ୍ଲା ମାଜିଷ୍ଟ୍ରେ ହାର୍ଟଓ୍ୱେଲ ସାହେବ ଓଡ଼ିଶାର ଦୁର୍ଗମାନଙ୍କ ବିଷୟରେ ଏକ ରିପୋର୍ଟ ଲେଖିଥିଲେ । ଏହି ରିପୋର୍ଟରେ ବର୍ଣ୍ଣିତ ରାଜାମାନଙ୍କ ଗଡ଼ସମୂହ ହେଲା- ବାଙ୍କୀ, ଦଶପଲ୍ଲା, ଆଠଗଡ଼, କେନ୍ଦ୍ରାପଡ଼ା, ନୟାଗଡ଼, ହିନ୍ଦୋଳ,

ତିଗିରିଆ, ବଡ଼ାମ୍ବା, ଢେଙ୍କାନାଳ, ଅନୁଗୁଳ, ତାଳଚେର, ମୟୂରଭଞ୍ଜ, ନୀଳଗିରି, ରଣପୁର, କେଉଁଝର, ମଙ୍ଗଳପୁର ତାଳମୁଣ୍ଡସ୍, ପଟିଆ, ହରିଶପୁର, ବିଷ୍ଣୁପୁର, ମରିଚପୁର, ଆଳି, କଣ୍ଟାଝର, ରଗଡ଼ି, ବଳରାମପୁର ଆମ୍ବା, ମଧୁପୁର, ସୁକିନ୍ଦା, ଦର୍ପଣୀ, କୁଜଙ୍ଗ, କନିକା, ଆଦି ।" (୮)

ଓଡ଼ିଶାର ସମସ୍ତ ଦୁର୍ଗ ଏବେ ଧ୍ୱଂସ ପ୍ରାୟ । ଉତ୍କଳ ସାମ୍ରାଜ୍ୟର ପ୍ରଧାନ ଦୁର୍ଗ ବାରବାଟୀ ଦୁର୍ଗ, ଚୁଡଙ୍ଗ ଗଡ଼, ରାଇବଣିଆ ଦୁର୍ଗା, ରଥିପୁର ଗଡ଼ ଓ ଖୋର୍ଦ୍ଧାଦୁର୍ଗ କେବଳ ଧ୍ୱଂସର କବରତଳୁ ନିଜର ଅସ୍ତିତ୍ୱ ଜାହିର କରୁଛି । ତାହାର ରକ୍ଷଣାବେକ୍ଷଣ ବା ପୁନରୁଦ୍ଧାର ହୋଇପାରୁନାହିଁ । ବାରବାଟୀ ଦୁର୍ଗ ୧୨୨୯ ମସିହା ପରେ ନିର୍ମିତ ହୋଇଥିଲା । ମାଦଳାପାଂଜି ଅନୁଯାୟୀ ଉତ୍କଳ ସମ୍ରାଟ ଅନଙ୍ଗଭୀମ ଦେବ ବାରବାଟୀ ଦୁର୍ଗକୁ ନିଜର ରାଜଧାନୀ କରି ଏହାର ନାମ ବାରଣାସୀ କଟକ ରଖିଥିଲେ । ଉତ୍କଳର ଶେଷ ସମ୍ରାଟ ମୁକୁନ୍ଦଦେବ ବା ମୁକୁନ୍ଦ ହରିଚନ୍ଦନ ମହାପାତ୍ର ଏଠାରେ ଗୋଟିଏ ଗୋଟିଏ ପ୍ରାସାଦ ନିର୍ମାଣ କରିଥିଲେ । ମୋଗଲ ସୈନ୍ୟବାହିନୀ ଓଡ଼ିଶାକୁ ଆକ୍ରମଣ କଲାବେଳେ ବାରବାଟୀ ଦୁର୍ଗ ଦଖଲ କରିଥିଲେ । ୧୭୪୨ ମସିହାରେ ମରହଟ୍ଟାମାନେ ବାରବାଟୀ ଦୁର୍ଗ ଦଖଲ କରିଥିଲେ । ଏହି ଦୁର୍ଗରେ ମରାଠା ପଦାତିକ ଓ ଘୋଡ଼ାସବାର ରହୁଥିଲେ । ୧୮୦୩ ମସିହାରେ ଇଂରେଜ ସୈନ୍ୟମାନେ ଓଡ଼ିଶା ଆକ୍ରମଣ କଲାବେଳେ ମରାଠାମାନଙ୍କୁ ହଟାଇ ବାରବାଟୀ ଦୁର୍ଗ ଦଖଲ କରିଥିଲେ । ଇଂରେଜ ଶାସନର ପ୍ରଥମ ଭାଗରେ ଏହା ଜେଲ୍ ଭାବରେ ବ୍ୟବହୃତ ହେଉଥିଲା । ପରେ ଇଂରେଜ କମିଶନରଙ୍କ ଅନୁମତିରେ ଦୁର୍ଗରୁ ପଥରମାନ କଢ଼ା ହୋଇ ଘର, ରାସ୍ତା ଓ କାଠଯୋଡ଼ି ନଦୀବନ୍ଧମାନ ନିର୍ମିତ ହେଲା । ଏପରିକି ପଥର ଖଣ୍ଡମାନଙ୍କୁ ବିକ୍ରି କରାଗଲା । ଇଂରେଜମାନେ ଜାଣିଶୁଣି ଦୁର୍ଗକୁ ନଷ୍ଟ କରିଦେଲେ । ପରବର୍ତ୍ତୀ କାଳରେ ସେଠାରେ ସରକାରୀ ଘରସବୁ ନିର୍ମିତ ହେଲା । ୧୯୪୭ ମସିହାରେ ଭାରତବର୍ଷ ସ୍ୱାଧୀନତା ପାଇଲା ପରେ ଓଡ଼ିଶାରେ ରାଜ୍ୟସ୍ତରୀୟ ସ୍ୱାଧୀନତା ଦିବସ, ବାରବାଟୀ ଦୁର୍ଗର ଭଗ୍ନାବଶେଷରେ ପାଳିତ ହୋଇଥିଲା । ଖୋର୍ଦ୍ଧା ଦୁର୍ଗ ମଧ୍ୟ ଅନୁରୂପ ଭାବେ ଇଂରେଜମାନଙ୍କ ଦ୍ୱାରା ଭଙ୍ଗାଯାଇଥିଲା । ୧୮୦୪ ଡିସେମ୍ବର ୧ ତାରିଖରୁ ୩ ତାରିଖ ଅପରାହ୍ନ ପର୍ଯ୍ୟନ୍ତ ତୋପମାଡ଼ କରି ଇଂରେଜମାନେ ଖୋର୍ଦ୍ଧା ଦୁର୍ଗ ଧ୍ୱଂସ କରିଥିଲେ । ପରବର୍ତ୍ତୀ ସମୟରେ ସେଠାରୁ ପଥରମାନ ନେଇ ଖୋର୍ଦ୍ଧା ଏସ୍‌ଡିଓ ଅଫିସ୍ ନିର୍ମିତ ହେଲା । ଦୁର୍ଗ ଅକ୍ଷୁଣ୍ଣ ରହିଲେ ଉତ୍କଳୀୟମାନଙ୍କର ଇଂରେଜ ବିରୋଧୀ ମନୋଭାବ ଜାଗ୍ରତ ହେବ ବୋଧହୁଏ ଏହି ଧାରଣା ଇଂରେଜମାନଙ୍କର ଥିଲା ।

"୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଦଖଲ କଲାପରେ ପାଇକମାନେ ନିର୍ଯ୍ୟାତିତ ହୋଇଥିଲେ । ଇଂରେଜମାନଙ୍କ ଦ୍ୱାରା ନିଯୁକ୍ତ ବଙ୍ଗାଳୀ ହାକିମ ଓ

କର୍ମଚାରୀମାନଙ୍କର ନିର୍ଯାତନା ମଧ୍ୟ କିଛି କମ୍ ନଥିଲା । ପାଇକମାନଙ୍କ ନିଷ୍କର ଜାଗିରି ଉପରେ କର ବସାଇବା ଓ ଲୁଣମାରି ଚଳୁଥିବା ଲବଙ୍ଗୀମାନଙ୍କ ଉପରେ କର ବସିଲା । ଫଳରେ ୧୮୧୭ ମସିହା ମାର୍ଚ୍ଚ ମାସ ୨୯ ତାରିଖରେ ଖୋର୍ଦ୍ଧାରେ ପାଇକମାନେ ବିଦ୍ରୋହରେ ଯୋଗଦେବା ଯୋଗୁଁ ପାଇକମାନଙ୍କୁ ଇଂରେଜ ସରକାର ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । ଖୋର୍ଦ୍ଧା ଛଡ଼ା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପାଇକମାନେ ସାମରିକ ବାହିନୀରେ ଥିଲେ । ଇଂରେଜମାନଙ୍କ କୁଶାସନ ଓ ପ୍ରତିକୂଳ ରାଜସ୍ୱ ଆଇନ୍ ଯୋଗୁଁ ଖୋର୍ଦ୍ଧା ଅଞ୍ଚଳରେ ପାଇକ ବିଦ୍ରୋହ ସଂଘଟିତ ହୋଇଥିଲା । ପାଇକ ବିଦ୍ରୋହ ଦୁଇବର୍ଷ ମଧ୍ୟରେ ବହୁ ପରିମାଣରେ ଦମନ ହୋଇଥିଲେ ମଧ୍ୟ ବକ୍ସି ଜଗବନ୍ଧୁ ଓ ଦେୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ଆଦି କେତେକ ନେତା ଦୀର୍ଘ ଆଠବର୍ଷ ପର୍ଯ୍ୟନ୍ତ ଧରାପଡ଼ିନଥିଲେ । ବହୁ ପାଇକ ସର୍ଦ୍ଦାର ଓ ପାଇକଙ୍କୁ ଜେଲ୍‌ଦଣ୍ଡ ଓ ମୃତ୍ୟୁଦଣ୍ଡ ଆଦି ଦିଆଯାଇଥିଲା । ଭାରତର କୌଣସି ବିଦ୍ରୋହରେ ଓଡ଼ିଶାର ପାଇକ ବିଦ୍ରୋହ ଭଳି ଇଂରେଜମାନଙ୍କୁ ଏତେ ହନ୍ତସନ୍ତ ହେବାକୁ ପଡ଼ିନଥିଲା ।

ପାଇକ ବିଦ୍ରୋହକୁ ଇଂରେଜମାନେ ଦମନ କରି ଚୁପ୍‌ଚାପ ହୋଇ ବସିନଥିଲେ । ପାଇକମାନଙ୍କୁ କିପରି ନିଜ ଅକ୍ତିଆରକୁ ଆଣିବେ ସେଥିପାଇଁ ଚେଷ୍ଟା ଚଳାଇଲେ । ସେତେବେଳେ ଇଂରେଜମାନଙ୍କର କଟକରେ ଗୋଟିଏ ସାମରିକ ବାହିନୀ ଥିଲା ଯାହାକୁ Cuttack Legion କୁହାଯାଉଥିଲା । ସେତେବେଳେ କଟକର କମିଶନରଙ୍କର ଉଦ୍ୟମକ୍ରମେ ଗୋଟିଏ ପାଇକ କମ୍ପାନୀ ଗଠିତ ହୋଇଥିଲା ଏବଂ ଏହା କେବଳ ଲିଜିଅନର ଚତୁର୍ଥ ଶାଖା ରୂପେ କାର୍ଯ୍ୟ କଲା । ଏହି କମ୍ପାନୀରେ ଜଣେ ସୁବେଦାର, ଦୁଇଜଣ ଜମାଦାର, ସାତଜଣ ହାବିଲଦାର, ସାତଜଣ ନାୟକ ଓ ଶହେ କୋଡ଼ିଏ ଜଣ ସିପାହୀ ପାଇକଥିଲେ । ଏହି ପାଇକ କମ୍ପାନୀକୁ ଇଂରେଜ ଇଷ୍ଟ ଇଣ୍ଡିଆ କମ୍ପାନୀ ସରକାର ତିନି ଦଶନ୍ଧି ଧରି ବ୍ୟବହାର କରିଥିଲେ ।

କଟକ ଲିଜିଅନ ବାହିନୀ ୧୮୨୨ ମସିହା ଡିସେମ୍ବର ୨୦ ତାରିଖରେ ବ୍ରହ୍ମପୁର ସୀମାକୁ ସ୍ଥାନାନ୍ତରିତ ହେଲେ । ତେଣୁ ଓଡ଼ିଆ ପାଇକ କମ୍ପାନୀ କଟକ କମିଶନରଙ୍କ ଅଧୀନରେ ରହିଲା । କିନ୍ତୁ ଏହି ପାଇକ କମ୍ପାନୀର ସେନାଧ୍ୟକ୍ଷ ଜଣେ ଇଂରେଜ ଅଫିସର ରହିଲେ । ଏହି ପାଇକ କମ୍ପାନୀକୁ ଖୋର୍ଦ୍ଧାକୁ ସ୍ଥାନାନ୍ତରିତ କରାଗଲା । ଏହାକୁ ଖୋର୍ଦ୍ଧା ପାଇକ କମ୍ପାନୀ ଆଖ୍ୟା ଦିଆଗଲା । ସେତେବେଳେ ବାଲେଶ୍ୱରରେ ସ୍ଥାନୀୟ ପାଇକମାନଙ୍କୁ ନେଇ ଓଡ଼ିଆ ପ୍ରଭିନସିଆଲ ବାଟାଲିଅନ ଗଠିତ ହୋଇଥିଲା । ବଙ୍ଗର ଇଂରେଜ ସରକାର ଏହାକୁ ଭାଙ୍ଗିଦେଇଥିଲେ । ସେତେବେଳର ବାଲେଶ୍ୱରର ଜିଲ୍ଲା ମାଜିଷ୍ଟ୍ରେଟ୍ ହେନେରୀ ରିକେଟସ୍ ବଙ୍ଗ ସରକାରଙ୍କୁ ୧୮୨୯ ମସିହା ଜୁଲାଇ ମାସରେ

ଲେଖିଲେ ଯେ ପ୍ରାଦେଶିକ ବାଟାଲିଅନରେ ୧୫୦ଜଣ ପାଇକଙ୍କୁ ନେଇ ଖୋର୍ଦ୍ଧା ପାଇକ କମ୍ପାନୀ ପରି ବାଲେଶ୍ୱରରେ ଗୋଟିଏ କମ୍ପାନୀ ରଖାଯାଉ । ଏହିପରି ଖୋର୍ଦ୍ଧା ଓ ବାଲେଶ୍ୱର ପାଇକ କମ୍ପାନୀ ଗଠିତ ହେଲା । ଏହିପରି ଖୋର୍ଦ୍ଧା ଓ ବାଲେଶ୍ୱର ସଦର ମହକୁମାରେ ଦୁଇଟି ଓଡ଼ିଆ କମ୍ପାନୀ ଗଠିତ ହୋଇ କାର୍ଯ୍ୟ କରୁଥିଲା ।

ଓଡ଼ିଆ ପାଇକ କମ୍ପାନୀମାନଙ୍କର କାର୍ଯ୍ୟ ଦୁରୂହ ଥିଲା । ଏମାନେ ବିଭିନ୍ନ ଗଣ୍ଡଗୋଳିଆ ଅଞ୍ଚଳକୁ ଯାଇ ଶାନ୍ତିରକ୍ଷା କରୁଥିଲେ । ଏହି ସ୍ଥାନଗୁଡ଼ିକ ମଧ୍ୟରୁ ବାଣପୁର, ଘୁମୁସର, ବାଙ୍କୀ, ଅନୁଗୁଳ, ବୌଦ୍ଧ, ନୟାଗଡ଼, କନ୍ଧମାଳ, ନୀଳଗିରି, କୁଜଙ୍ଗ, ମୟୂରଭଞ୍ଜ, ଚାଇଁବସା ଓ ସମ୍ବଲପୁରରେ (୧୮୧୮ରୁ ୧୮୫୯ ମସିହା ଯାଏଁ) ପାଇକମାନେ ଶାନ୍ତିଶୃଙ୍ଖଳା ରକ୍ଷା କରିଥିଲେ । ଓଡ଼ିଆ ପାଇକ କମ୍ପାନୀକୁ ପୋଲିସମାନଙ୍କର କାର୍ଯ୍ୟ କରିବାକୁ ମଧ୍ୟ ଦିଆଯାଉଥିଲା । ଖୋର୍ଦ୍ଧାରେ ଥିବା ଓଡ଼ିଶା ପାଇକ କମ୍ପାନୀର ଲୋକମାନଙ୍କୁ ବାଣପୁର, ଖୋର୍ଦ୍ଧା ଓ ଡେଲାଙ୍ଗରେ ବିଭିନ୍ନ କାର୍ଯ୍ୟ ଦିଆଯାଇଥିଲା ।

ଓଡ଼ିଶା ପାଇକ କମ୍ପାନୀ ଦୀର୍ଘ ବର୍ଷ ଧରି ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ ମଧ୍ୟ ସରକାର ଏମାନଙ୍କ ପ୍ରତି ହତାଦରଭାବ ପୋଷଣ କରୁଥିଲେ । ବଙ୍ଗ ସରକାର ସ୍ୱତନ୍ତ୍ର ଭାବେ ଓଡ଼ିଶା ପାଇକ କମ୍ପାନୀକୁ ରଖିବାକୁ ପସନ୍ଦ କରିନଥିଲେ । ତେଣୁ ୧୮୫୯ ମସିହା ମାର୍ଚ୍ଚ ମାସରେ ଓଡ଼ିଶା ପାଇକ କମ୍ପାନୀଙ୍କୁ ଭାଙ୍ଗି ଦିଆଗଲା । ଏହି ସମୟରେ ବଙ୍ଗ ସରକାର ସ୍ଥିର କଲେ ଯେ କଟକଠାରେ ଗୋଟିଏ ନୂଆ ବେଙ୍ଗଲ ପୋଲିସ ବାଟାଲିୟନ ଖୋଲିବେ । ଏହି ବାଟାଲିୟନରେ ଓଡ଼ିଶା ପାଇକ କମ୍ପାନୀର ପାଇକମାନଙ୍କୁ ନିଆଗଲା । ୧୮୫୯ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପାଇକ କମ୍ପାନୀର ଅବସାନ ଘଟିଲା । ସେହିଦିନଠାରୁ ସରକାରୀ ଉଦ୍ୟମରେ ପାଇକମାନଙ୍କୁ ଏକ ସ୍ୱତନ୍ତ୍ର ପାହ୍ୟା ଦେଇ ରାଜ୍ୟ ପୋଲିସ ବାହିନୀରେ ନେବା ମଧ୍ୟ ବନ୍ଦ ହେଲା । ପାଇକମାନଙ୍କର ଦୂରାବସ୍ଥା ବଢ଼ିଗଲା । ତଥାପି ଏବେବି ପାଇକମାନେ ସେମାନଙ୍କର ଆଖଡ଼ା ବଜାୟ ରଖିଛନ୍ତି ।"(୯)

(ଯୁଗେ ଯୁଗେ ଓଡ଼ିଶାର ସାମରିକ ପରାକ୍ରମ)

"ଭାରତର ସେନାବାହିନୀରେ ଅନେକ ବିଭାଗ ଓ ଉପବିଭାଗ ରହିଛି । ତାହା ସବୁ ବିଭିନ୍ନ ଅଞ୍ଚଳ ବା ଜାତି ବା ପ୍ରାତଃ ସ୍ମରଣୀୟ ବୀରପୁରୁଷମାନଙ୍କ ନାମାନୁସାରେ ନାମିତ । ଏହାର ତାଲିକା ବହୁତ ଲମ୍ବା । ସେସବୁ ହେଲା ଶିଖ ରେଜିମେଣ୍ଟ, ପଞ୍ଜାବ ରେଜିମେଣ୍ଟ, ବିହାର ରେଜିମେଣ୍ଟ, ଆସାମ ରେଜିମେଣ୍ଟ, ଜାଠ ରେଜିମେଣ୍ଟ, ଡୋଗ୍ରା ରେଜିମେଣ୍ଟ, ବେଙ୍ଗଲ ରେଜିମେଣ୍ଟ, ମରାଠା ରେଜିମେଣ୍ଟ, ମାଡ୍ରାସ ରେଜିମେଣ୍ଟ, କୁମାୟୁ ରେଜିମେଣ୍ଟ, ମହର ରେଜିମେଣ୍ଟ (ମଧ୍ୟପ୍ରଦେଶ), ନାଗା ରେଜିମେଣ୍ଟ, ଗୋର୍ଖା ରେଜିମେଣ୍ଟ, ଗଡ଼ୱାଲ

ରାଇଫଲ୍‌ସ, ଜାମ୍ମୁ-କାଶ୍ମୀର ରାଇଫଲ୍‌ସ, ଆସାମ ରାଇଫଲ୍‌ସ, ଗୋର୍ଖା ରାଇଫଲ୍‌ସ, ଅରୁଣାଚଳ ସ୍କାଉଟ, ଲଦାଖ ସ୍କାଉଟ, ହାଇଦ୍ରାବାଦ ରାଇଫଲ୍‌ସ, ବାଙ୍ଗାଲୋର କନ୍‌ଟିଜେଣ୍ଟ, ନାଗପୁର ରାଇଫଲ୍‌ସ, ଲକ୍ଷ୍ନୌ ରାଇଫଲ୍‌ସ, ପୁନା ରାଇଫଲ୍‌ସ, ସିମଳା ରାଇଫଲ୍ସ, ସିନ୍ଧି ରାଇଫଲ୍‌ସ, ଦିଲ୍ଲୀ କନ୍‌ଟିଜେଣ୍ଟ, ଆସାମ-ବେଙ୍ଗଲ ରେଲୱେ ବାଟାଲିୟନ, କୋଲକାତା ପ୍ରେସିଡେନ୍ସି ବାଟାଲିୟନ, ବମ୍ବେ ଗ୍ରୀନଡିୟର, ରାଜପୁତ ରେଜିମେଣ୍ଟ, ପଞ୍ଜାବ ପ୍ରଥମ ରେଜିମେଣ୍ଟ, ଶିଖ୍ ଲାଇଟ୍ ଇନ୍‌ଫାନ୍‌ଟ୍ରି ଇତ୍ୟାଦି ଇତ୍ୟାଦି । ମାତ୍ର ଏହି ଦୀର୍ଘ ତାଲିକାଟି ପାଠ କରୁଥିବାବେଳେ ପାଠକ ପାଠିକାମାନେ ଆମ ରାଜ୍ୟ ଉତ୍କଳ ବା କଳିଙ୍ଗ ବା ଓଡ଼ିଶା ସହିତ ବା ଏହି ରାଜ୍ୟର କୌଣସି ସ୍ଥାନ ବା ଏହି ରାଜ୍ୟର ଜନସାଧାରଣଙ୍କ ସହିତ କୌଣସି ଗୋଟିଏ ବି ବିଭାଗର ସଂପୃକ୍ତି ଥାଇ ନାମକରଣ କରାଯାଇଥିବା ଦେଖିଲେ କି? ୧୮୨୫ରୁ ୧୮୫୯ ପର୍ଯ୍ୟନ୍ତ ଥିବା 'ଓଡ଼ିଶା ପାଇକ କମ୍ପାନୀ'ର ନାମ ପରିବର୍ତ୍ତନ କରି 'ପାଇକ ରେଜିମେଂଟ୍' ନାମରେ ସ୍ୱାଧୀନତା ପରେ ସ୍ଥାନ ଦେଇଥିଲେ କ'ଣ ଅସୁବିଧା ହୋଇଥାନ୍ତା । ଏ ପରିପ୍ରେକ୍ଷୀରେ ପ୍ରଶ୍ନ ଉଠିଥାଏ ଯେ ଗୋଟିଏ ରାଜ୍ୟ ବା ଜାତି ବା ଅଞ୍ଚଳର ନାମରେ ଏକାଧିକ ରେଜିମେଣ୍ଟ ବା ରାଇଫଲସ ଥିବା ସ୍ଥଳେ ଭାରତ ଇତିହାସରେ ଏକ ସାହସୀ ଓ ବୀରଭୂମି ଭାବେ ଖ୍ୟାତ କଳିଙ୍ଗର ନାମ ଏଥିରେ ଅନୁପସ୍ଥିତ ରହିବା ବିସ୍ମୟକର । ପ୍ରାଚୀନ କଳିଙ୍ଗର ଅଧିବାସୀ କେବଳ ବୀର ନଥିଲେ, କଳିଙ୍ଗ ଥିଲା ସମୃଦ୍ଧିର ପ୍ରତୀକ । ଏହି ମାଟିର ସାଧବମାନେ ଦୁଃସାହସିକ ନୌଯାତ୍ରା କରି ଜାଭା, ବାଲି ଓ ବୋର୍ଣ୍ଣିଓ ଭଳି ଦ୍ୱୀପରେ ବାଣିଜ୍ୟ କରୁଥିଲେ । ଏବେବି ବାଲି ଦ୍ୱୀପରେ କଳିଙ୍ଗବାସୀଙ୍କ ବହୁ ପରମ୍ପରା ଦେଖିବାକୁ ମିଳେ । ଶ୍ରୀଲଙ୍କା ବା ସିଂହଳର ଅଧିବାସୀମାନେ ମୂଳତଃ କଳିଙ୍ଗର ଅଧିବାସୀ । କଳିଙ୍ଗରୁ ବୌଦ୍ଧ ସନ୍ନ୍ୟାସୀ ଯାଇ ସେଠାରେ ବୌଦ୍ଧ ଧର୍ମ ପ୍ରଚାର କରିଥିଲେ । ଆଜିର ବଙ୍ଗୋପସାଗର ସେତେବେଳେ ଥିଲା କଳିଙ୍ଗ ସାଗର । କଳିଙ୍ଗର ଲୋକମାନେ ଥିଲେ ବୀର ଓ ସାହସୀ । ସେଥିପାଇଁ କୁହାଯାଉଥିଲା 'କଳିଙ୍ଗାଃ ସାହସିକାଃ' । କଳିଙ୍ଗର ସମ୍ରାଟ ମହାମେଘବାହନ ଐର ଖାରବେଳ ଏକଦା ଅଧୁନା ଭାରତର ଦୁଇ-ତୃତୀୟାଂଶ ଅଞ୍ଚଳରେ ନିଜର ସାମ୍ରାଜ୍ୟ ବିସ୍ତାର କରିଥିଲେ। ସୂର୍ଯ୍ୟବଂଶୀ ଗଜପତି କପିଳେନ୍ଦ୍ର ଦେବ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ରାଜ୍ୟ ଜୟ କରିଥିଲେ । ତାହା ଥିଲା ଉତ୍କଳର ପ୍ରବଳ ପରାକ୍ରମର ସମୟ ।

ଇଂରେଜମାନେ ବହୁତ ବିଳମ୍ବରେ ଅର୍ଥାତ୍ ୧୮୦୩ରେ ଓଡ଼ିଶା ଅଧିକାର କଲେ । ତେବେ ଇଂରେଜମାନଙ୍କ ବିରୋଧରେ ପ୍ରଥମ ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମ ଏହିଠାରେ ଆରମ୍ଭ ହୋଇଥିଲା, ଯାହାକୁ ପାଇକ ବିଦ୍ରୋହ ବୋଲି କୁହାଯାଏ । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ୧୮୧୭ ମାର୍ଚ୍ଚ ୨୯ ତାରିଖରୁ ଆରମ୍ଭ ହୋଇ ୧୮୨୫ ମଇ ମାସ ୨୫ ତାରିଖ ବକ୍ସିଙ୍କ ଗିରଫ ପର୍ଯ୍ୟନ୍ତ ଏହି ବିଦ୍ରୋହ ପ୍ରଜ୍ୱଳିତ ହୋଇଥିଲା । ଏହି ପାଇକ

ବିଦ୍ରୋହ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଗୌରବର ଟୀକା ବହନ କରିଛି ତଥା ବହୁ ବୀର ପୁଙ୍ଗବମାନଙ୍କ ଅନ୍ତୁଡ଼ିଶାଳ ରୂପେ ଖ୍ୟାତିଲାଭ କରିଛି। ଜାତୀୟତା ଚେତନାର ଆଗ୍ନେୟଗିରି ଖୋର୍ଦ୍ଧାର ମାଟିକୁ ଚିପୁଡ଼ିଦେଲେ ମିଳିବ ଶହୀଦ ଓ ସଂଗ୍ରାମୀମାନଙ୍କ ଯନ୍ତ୍ରଣାଦଗ୍ଧ ତ୍ୟାଗପୂତ ଜୀବନର ଅମଳିନ ଗାଥା । ଏପରିସ୍ଥଳେ କଳିଙ୍ଗ ରେଜିମେଣ୍ଟଟିଏ ବା ପାଇକ ରେଜିମେଣ୍ଟଟିଏ ସେନାବାହିନୀରେ ରହି ଏ ଜାତିର ସାହସ ଓ ବୀରତ୍ୱକୁ ସ୍ୱୀକୃତି ପ୍ରଦାନ କରିବା ଉଚିତ୍ ନୁହେଁ କି ?

କେବଳ ସେତିକି ନୁହେଁ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଥିବା ଦ୍ୱିତୀୟ ଆର୍ଯ୍ୟ ଭାଷା । ଏହି ଜାତି ପାଖରେ ଶାସ୍ତ୍ରୀୟ ନୃତ୍ୟ ରହିଛି । ଏହି ଜାତିର କାରିଗରମାନଙ୍କ ଦ୍ୱାରା ସୃଷ୍ଟ ସ୍ଥାପତ୍ୟ ବିଶ୍ୱ ବିସ୍ମୟ ଭାବେ ଗଣା । ଏହି ଜାତି ଅନେକ କୀର୍ତ୍ତି ସ୍ତମ୍ଭ ସ୍ଥାପନ କରିଥିବା ସତ୍ତ୍ୱେ କେବଳ ବଢ଼ାଇ କରି ଜାଣିନାହିଁ ବୋଲି ବର୍ତ୍ତମାନର ପ୍ରଚାର ସର୍ବସ୍ୱ ଯୁଗରେ ପଛରେ ପଡ଼ିଯାଇଛି । ଏହି ମର୍ମରେ ଏକ ଯଥାର୍ଥ ଦାବି ରୂପେ ଆମ ସେନାବାହିନୀରେ କଳିଙ୍ଗ ରେଜିମେଣ୍ଟ ଅବା ପାଇକ ରେଜିମେଣ୍ଟଟିଏ କାହିଁକି ନରହିବ ବୋଲି ସମସ୍ତେ ପ୍ରଶ୍ନ ପଚାରିବା ଉଚିତ। (୧୦)

ପାଇକଙ୍କୁ ନେଇ ପାଇକ ବିଦ୍ରୋହ । ପାଇକମାନେ ପାଇକ ଆଖଡ଼ା ମାଧ୍ୟମରେ ସେମାନଙ୍କ ସାମରିକ କ୍ରୀଡ଼ାକୁ ଉଜ୍ଜୀବିତ ରଖିଥାନ୍ତି । ଏବେ ସରକାରଙ୍କ ଉଦାସୀନତା ତଥା ଏହି କ୍ରୀଡ଼ାକୁ ପ୍ରୋତ୍ସାହନ ଦେଇଆସୁଥିବା ଜମିଦାର ଓ ଦଳବେହେରାମାନଙ୍କର ଆର୍ଥିକ ଦୁରାବସ୍ଥା ହେତୁ ଏହା ଲୋପ ପାଇବାକୁ ବସିଛି । ପୁନଶ୍ଚ ପାଇକ କ୍ରୀଡ଼ାକୁ କେତେକ ସ୍ଥାନରେ ପାଇକ ନୃତ୍ୟରେ ପରିଣତ କରାଯାଇ ଅବନତି କରାଯାଉଛି । 'History and spiritually blend at Barunei'ରେ ଏହା ନିମ୍ନମତେ ସ୍ଥାନ ପାଇଛି ।

"Paika Nrutya the traditional battle dance of the state might have withstood the test of time, but the number of akhadas (training centres) in Odisha is gradually on the decline. Blame it on an apathetic Government, Lack of promotional avenues and funding. The dance revolves around acrobatic movements with swords, lathis (sticks), chakras (wheels) and dhalas (shields) to the accompaniment of chagi 'Mahuri', 'Nagara' and cymbols. In the ancient times, Paika Nrutya by the warriors was considered a rehearsal for the battle.Scholars have compared Paika Nrutya to Kalaripayatu of Kerala, considered the oldest fighting system in existence, because of its approach to traditional

weapons and techniques, but the former does not enjoy the patronage that the later does. In fact, Kerala has been successful in converting kalaripayattu into a tourism product where as in odisha, Paika Nrutya is limited to ahandful of villages in rural areas." (11)

ଏଥିରୁ ଜଣାପଡ଼େ ଯେ ସାମରିକ ପାଇକ ନୃତ୍ୟ ପ୍ରୋତ୍ସାହନ ଅଭାବରୁ ଏହାର ଗୁଣାତ୍ମକ ମାନ ଓ ସଂଖ୍ୟା କ୍ରମଶଃ କମି କମି ଆସୁଛି । କେରଳ ସରକାର ପ୍ରୋତ୍ସାହନ ଦେଉଥିବାରୁ କେରଳର ପାରମ୍ପରିକ ଯୁଦ୍ଧ ନୃତ୍ୟ କଲାରିପାୟଟୁ ପ୍ରତି ଅଞ୍ଚଳରେ ଦେଖିବାକୁ ମିଳୁଛି ଏବଂ ପର୍ଯ୍ୟଟକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରୁଛି । ଏହି ସାମରିକ ନୃତ୍ୟ ଯୋଗୁଁ କେରଳର କିଛି ଲୋକ ଏହାକୁ ବୃତ୍ତି ଭାବେ ଗ୍ରହଣ କରି ରୋଜଗାରକ୍ଷମ ହୋଇପାରୁଛନ୍ତି । ଆମ ଓଡ଼ିଶାରେ ତାହା ହୋଇପାରିନାହିଁ । ନିଜର ହକ ଦାବି ପାଇଁ ପାଇକମାନେ ଅଣ୍ଟା ନଭିଡ଼ିଲେ ଆମେ ସେମିତି ପଛରେ ପଡ଼ିରହିବା ଏହା ବୁଝିବାକୁ ଆଉ ବାକି ନାହିଁ । କେରଳ ଭଳି ମଣିପୁର ସରକାର ସେ ରାଜ୍ୟର ପାରମ୍ପରିକ ସାମରିକ କଳା 'ଥାମତା'କୁ ମଧ୍ୟ ପ୍ରୋତ୍ସାହନ ଦେଇ ସାମରିକ କଳାର ସମସ୍ତ ଦିଗ ଅକ୍ଷୁଣ୍ଣ ରଖିପାରିଛନ୍ତି ।

"History and blend at Barunei' ପୁଣି ଉଲ୍ଲେଖ ଅଛି-

"The Martial prowess of Paiks finds, mention in Sarala Das's 'Mahabharat' written in the 15the centaury, poet Balaram Dash's work Jagamohan Ramayan and even in the carvings on the Sun Temple at Korark. Historians said when the British started meedling with the revenue system of the state in 1803, the farming community rose in rebellion. At that juncture, Buxi Jagabandu Bidyadhar, military chief of the king of Khordha revolted on April 2, 1817 Bidyadhar led his army of paiks, the British were forced to retreat. The rebellion came to be known as Paika Bidroh. Also, it was due to the paikas that the Britishers did not find it easy to win over Khurda.

While officially, there is no information on the exact number of Akhadas existing in the state today. unofficial sources put the number of paikas still practicing the martial dance form at around 20,000 in the

area of Khurda, Dhenkanal, Ganjam, Puri, Gajapati, Talcher, Ranapur, Khandapada, Banki, Nayagarh and Balasore. The maximum number of Akhadas exists in different parts of Khurda distict. If the Paika Nrutya is performed to-day, it is because of the stage shows that offer money for sustenence. "There is no encouragement from the Government's side" says Gyana Ranjan Mohanty, a puri based acrobat who performs Paika Nrutya and Malakhamb. He says that existing forms of Malakhamb, Sahi yatra, Ranapa, Dhensa, Chhau and Nage Nach have been born out of Paika Nrutya" (12)

ଓଡ଼ିଶା ପାଇକ ମହାସଂଘର ସଭାପତି ଅଶୋକ କୁମାର ପାଲଟାସିଂହ ମତ ଦିଅନ୍ତି ପାଇକ ଆଖଡ଼ା ତିଷ୍ଠି ରହିବା ପାଇଁ ସରକାରୀ ଅନୁଦାନ ଆବଶ୍ୟକ । ଏ କ୍ଷେତ୍ରରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଆସିଛନ୍ତି । ପ୍ରୋତ୍ସାହନ ମିଳିଲେ ପାଇକ ଆଖଡ଼ା ଦଳ ସଂଖ୍ୟାରେ ବହୁ ବୃଦ୍ଧି ଘଟିବ । ପୁଣି ସେ ମତ ଦେଇଥିଲେ ପାଇକ ଆଖଡ଼ା କେବେବି ପାଇକ ନୃତ୍ୟ ନୁହେଁ ଏହା ଏକ ସାମରିକ କ୍ରୀଡ଼ା । ଦୀର୍ଘ ୩୫ ବର୍ଷ ଧରି ରାଜ୍ୟସ୍ତରୀୟ ପଞ୍ଜୀକୃତ ହୋଇଥିବା କଳିଙ୍ଗ ପାଇକ ସଂଗଠନର ସାଧାରଣ ସମ୍ପାଦକ କୃଷ୍ଣଚନ୍ଦ୍ର ହରିଚନ୍ଦନ ଓ ଉତ୍କଳ ବିକାଶ ପରିଷଦର ମହାସଚିବ ଇଂ. ଋଷି ଗୁମାନସିଂହ ମଧ୍ୟ ଅନୁରୂପ ମତ ଦିଅନ୍ତି । ଗୋଳବାଇର ରାମଚନ୍ଦ୍ର ରଥ ଓ ଖୋର୍ଦ୍ଧା ବିଷୁବ ମିଳନ ସଂପାଦକ ଜ୍ଞାନରଂଜନ ଦାଶ ଓଡ଼ିଶା ସରକାର ପାଇକ ଆଖଡ଼ାକୁ କ୍ରୀଡ଼ା ବିଭାଗ ଅଧୀନକୁ ଆଣିବା ପାଇଁ ମତ ଦେଇଛନ୍ତି । ୨୦୨୦ ନଭେମ୍ବର ୨୭ ତାରିଖ ଦିନ କଳିଙ୍ଗ ପାଇକ ସଂଗଠନର ଅନ୍ୟତମ ପ୍ରତିଷ୍ଠାତା ହଟନାଥ ମଙ୍ଗରାଜଙ୍କ ଶହେତମ ଜନ୍ମଦିବସ ଭୁବନେଶ୍ୱର ଗଙ୍ଗନଗରଠାରେ ପାଳନ ହେଉଥିବା ଅବସ୍ଥାରେ ଲେଖକର ପ୍ରସ୍ତାବକ୍ରମେ ତାପଙ୍ଗ ଦଳବେହେରା ସ୍ମୃତି ପରିଷଦର ସଭାପତି ତଥା କଳିଙ୍ଗ ପାଇକ ସଂଗଠନର ପୃଷ୍ଠପୋଷକ ଇଂ. ଶିଶିର କୁମାର ନାୟକ ଏବଂ ରାଜ୍ୟର ବରିଷ୍ଠ ସ୍ତମ୍ଭକାର ତଥା ଭାଷା ଆନ୍ଦୋଳନର ପ୍ରମୁଖ ବ୍ୟକ୍ତିତ୍ୱ ପ୍ରଦ୍ୟୁମ୍ନ କୁମାର ଶତପଥୀ ପାଇକ ଆଖଡ଼ାକୁ କ୍ରୀଡ଼ା ବିଭାଗ ଅଧୀନକୁ ଆଣି ଏହାର ବିକାଶ ଦିଗରେ କାର୍ଯ୍ୟ କରିବାକୁ ରାଜ୍ୟ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଦୃଢ଼ ସ୍ୱରରେ ଘୋଷଣା କରିଥିଲେ ।

ଇଟାଲୀ ବିଦେଶିନୀ ନୃତ୍ୟାଙ୍ଗନା ଏଲିନା ସିତାରିଷ୍ଟ ତାଙ୍କ ପୁସ୍ତକ "Traditional Martial Practices of Odisha"ରେ ପାଇକ ଆଖଡ଼ାର ସାମରିକ କଳା ନୃତ୍ୟ ନା କ୍ରୀଡ଼ା ସେ ନେଇ ସଂଶୟ ପ୍ରକାଶ କରିଛନ୍ତି । ସେ ଲେଖିଛନ୍ତି– "Paika Nrutya is currently in a no man's land. Government is yet to classify it as a perform-

ing art or a form of sport as a result of which, it does not come under either the sports Department or culture Department. This is why no one pays attention towards its propagation and whatever little is being done for its promotion is half-hearted. Although Paika training exists in rural areas of the state, it is not systematic. Not all the Paikas are adept in every form of the martial dance. Only a few can play with a sword and shield to-day. you will not find the entire gamut of the martial art in any of the Akhadas, what can be seen is mostly martial exercises like Banati, lathi Khela, chakra Ladhei pyramid formation and somer sault" (13)

ଶିକ୍ଷକ ମହାସଂଘ ୧୯୯୨ ମସିହାରେ ଯେତେବେଳେ ଗୁରୁଜଙ୍ଗଠାରେ ଓଡ଼ିଶା ପାଇକ ସମରକଳା ଏକାଡେମୀ ନାମରେ ଅନୁଷ୍ଠାନ ପ୍ରତିଷ୍ଠା କଲେ ସେତେବେଳେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଓ କ୍ରୀଡ଼ା ନିର୍ଦ୍ଦେଶକ ଅନାଦି ସାହୁ ଆସି ଉଦ୍‌ଘାଟନ କରିଥିଲେ । ବାର୍ଷିକ ଉତ୍ସବରେ ଆସି ୩୦ଜଣ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଙ୍କୁ ପ୍ରମାଣପତ୍ର ଦେଇଥିଲେ । ତାଲିମଧାରୀ ଯୁବକମାନଙ୍କର କ୍ରୀଡ଼ା ନୈପୁଣ୍ୟ ଦେଖି ଭାବବିହ୍ୱଳ ହୋଇଥିଲେ । କେରଳର କଲାରିପାୟଟ୍ଟୁ ଭଳି ଓଡ଼ିଶାରେ ପାଇକ ଆଖଡ଼ା ତାଲିମ ଦିଆଯିବ ବୋଲି ଘୋଷଣା କରିଥିଲେ । କିନ୍ତୁ କେଉଁ କାରଣରୁ ଏହି ଅନୁଷ୍ଠାନକୁ ଦୁଇ ବର୍ଷ ପରେ ବନ୍ଦ କରିଦିଆଗଲା ତାହା ଜଣାପଡ଼ିଲା ନାହିଁ । ମାଲୁଦର ପାଇକ ଗୁରୁ କେଦାରନାଥ ଦାସଙ୍କ ମତରେ ଏହି ପାଇକ ତାଲିମ କେନ୍ଦ୍ର ବନ୍ଦ ହେବା ଯୋଗୁଁ ପାଇକକ୍ରୀଡ଼ା ବିକାଶରେ ଅପୂରଣୀୟ କ୍ଷତି ଘଟିଲା । ଢେଙ୍କାନାଳର ପ୍ରଫେସର ଡ. ଗାୟନ ସାମଲ ଓଡ଼ିଶା ସରକାରଙ୍କ କ୍ରୀଡ଼ା ବିଭାଗ ପାଇକ କ୍ରୀଡ଼ାକୁ କେଉଁ କାରଣରୁ କ୍ରୀଡ଼ା ବିଭାଗରେ ସାମିଲ କଲେନାହିଁ ତାହା ବୁଝାପଡୁନାହିଁ ବୋଲି ମତ ଦିଅନ୍ତି । ଖ୍ୟାତନାମା ଓଡ଼ିଶୀ ନୃତ୍ୟଗୁରୁ ଦୁର୍ଗାଚରଣ ରଣବୀର କହନ୍ତି, 'ପାଇକ ଆଖଡ଼ା ଏକ ସାମରିକ କଳା । ଏହା ଉଭୟ କ୍ରୀଡ଼ା ଓ ସଂସ୍କୃତି ବିଭାଗ ଅଧୀନରେ ରହିପାରିବ । ଗୋଟିପୁଅ ନାଚ ଏହି ପାଇକ ଆଖଡ଼ାରୁ ସୃଷ୍ଟି । ଆମେ ପାଇକ ନାଚ ପିଲାଙ୍କୁ ଶିକ୍ଷା ଦେଉଛୁ ।' ପାଇକ ଆଖଡ଼ା ବାସ୍ତବରେ ଉଭୟ କ୍ରୀଡ଼ା ଓ ନୃତ୍ୟ ଉଭୟର ଜନନୀ । ଏହାର ବିକାଶ ପ୍ରତି ଧ୍ୟାନ ଦିଆଯାଉ ନଥିବାରୁ ଏହା ଲୁପ୍ତ ହେବା ପଥରେ ଗତି କରୁଛି ।

ପୂର୍ବେ ଓଡ଼ିଶାରେ ଅନେକ ମଲ୍ଲ, ମହାମଲ୍ଲ ଥିଲେ । ସେମାନେ ଶାରୀରିକ ଶକ୍ତି ପ୍ରୟୋଗ କରି ବହୁ ଅସମ୍ଭବ କାମ କରିପାରୁଥିଲେ । ସେଥି ମଧ୍ୟରୁ ପୁରୀ ଜିଲ୍ଲା ଆମ୍ବିଳିହଣା

ଗଡ଼ର ସାମନ୍ତ ପଦ୍ମଚରଣ ରାୟଙ୍କୁ 'ଉତ୍କଳଭୀମ' ଉପାଧି ଦିଆଯାଇଥିଲା । ସେହିପରି ରଣପୁର ବ୍ଲକ୍ ମଝିଆଖଣ୍ଡ ନିକଟ ମଧୁପୁର ଗ୍ରାମର ଉଚ୍ଛବ ପ୍ରଧାନଙ୍କୁ "ଉତ୍କଳ ମହାବୀର" ଉପାଧି ଦିଆଯାଇଥିଲା । ସେ ପୁରୀ ଓ କଟକ ସହରରେ ରହି ନିଜର ଶାରୀରିକ ଶକ୍ତି ପ୍ରଦର୍ଶନ କରୁଥିଲେ । ଉତ୍କଳ ମହାବୀର ଉଚ୍ଛବ ପ୍ରଧାନ ବେକରେ ଲୁହାଛଡ଼ ରଖି ତାକୁ ଅକ୍ଳେଶରେ ବଙ୍କା କରିବା, ବେକରେ ବାଉଁଶ ରଖି ଦୁଇ ପାଖରେ ୧୦ଜଣ କରି ଲୋକ ଠିଆ କରାଇବା, ଛାତି ଉପରେ ଅତ୍ୟନ୍ତ ଗୁରୁଭାର ବିଶିଷ୍ଟ ବୃହତ ପ୍ରସ୍ତରଖଣ୍ଡମାନ ରଖି ତାହାକୁ ଲୁହାର ହାତୁଡ଼ିରେ ଭାଙ୍ଗି ଚୂର୍ଣ୍ଣ କରିବା, ଶୂନ୍ୟ ଛାତିରେ ପଥର ଭାଙ୍ଗିବା, ଛାତି ହାତ ଓ ଗୋଡ଼ ଉପରେ ଶକ୍ତ ବୋଝେଇ ଶଗଡ଼ ଚଳାଇବା, ବେକ ଉପରେ ଜଣେ ମନୁଷ୍ୟଙ୍କୁ ରଖି ଶୂନ୍ୟାଶ୍ରୟରେ ଭୂମିରୁ ଉଠିବା, ଉଚ୍ଚ ବୃକ୍ଷ ଉପରେ ଠିଆ ହୋଇ ଦାନ୍ତରେ ରସି କାମୁଡ଼ି ଜଣେ ଲୋକକୁ ବୃକ୍ଷ ଉପରେ ଚଢ଼ାଇବା, ମୁଣ୍ଡ ଉପରେ ସୁବୃହତ ପ୍ରସ୍ତର ଖଣ୍ଡ ଚୂର୍ଣ୍ଣ କରାଇବା, କହୁଣୀରେ କତାଥିବା ନଡ଼ିଆ ଛଡ଼ାଇବା, ଶୋଇକରି ମୁଦ୍‌ଗର ଛଡି କରିବା, ଖମ୍ବ ଉପରେ ଗୋଡ଼ ରଖି ମୁଣ୍ଡ ତଳକୁ କରି ଦାନ୍ତରେ ଅନ୍ୟ ଜଣଙ୍କୁ ଦୋଳି ଖେଳାଇବା ଭଳି ବହୁ ଆଶ୍ଚର୍ଯ୍ୟ ଖେଳ ଓ କସରତ କରୁଥିଲେ । ଏହାଥିଲା ୧୯୨୮ ରୁ ୧୯୩୬ ମସିହାର ଘଟଣା । ସେ ପ୍ରାଣାୟମ ବ୍ୟାୟାମ ମଧ୍ୟ ଶିଖାଉଥିଲେ । ତାଙ୍କ ପୁତ୍ର ଧନେଶ୍ୱର ପ୍ରଧାନଙ୍କୁ ପଚାରିବାରେ ସେ କହିଲେ "ପହିଲିମାନ ଉତ୍କଳ ମହାବୀର ଉଚ୍ଛବ ପ୍ରଧାନଙ୍କ ପିତା କେଶବ ରଣସିଂହ ଜଣେ ଖ୍ୟାତନାମା ପାଇକଗୁରୁ ଥିଲେ । କେଶବଙ୍କ ପିତା ଓ ପ୍ରପିତାମହ ମଧ୍ୟ ପାଇକଗୁରୁ ଥିଲେ । ରଣପୁର ରାଜାଙ୍କ ଦ୍ୱାରା ସାହାଯ୍ୟ ସହଯୋଗ ପାଉଥିଲେ । କିଭଳି କେଉଁ ସାଧନା କରିବ ସେଥିପାଇଁ ଏକ ଲିଖିତ ପୋଥି ଥିଲା । ବାୟୁ ସାଧନା ଦ୍ୱାରା ଏସବୁ ସମ୍ଭବ ହେଉଥିଲା ।"

ଉପର୍ଯୁକ୍ତ ତଥ୍ୟାଦିରୁ ପାଇକ ଆଖଡ଼ାକୁ ପ୍ରୋତ୍ସାହନ ଦେଇ ଏହା ଉଜ୍ଜୀବୀତ ରଖିବା ଏବଂ କ୍ରୀଡ଼ା ବିଭାଗରେ ଅନ୍ତର୍ଭୁକ୍ତ କରିବା ଆବଶ୍ୟକ । କ୍ରମଶଃ ପାଇକ ଆଖଡ଼ାର ସଂଖ୍ୟା କମି ଆସୁଥିବାବେଳେ ଗୁଣାତ୍ମକମାନରେ ମଧ୍ୟ ଅବକ୍ଷୟ ଘଟୁଛି । ୧୯୬୮ ମସିହା କଥା । ମୋର ଜଣେ ସମ୍ପର୍କୀୟ ଦାଦାଙ୍କର ବିବାହ ଶୋଭାଯାତ୍ରା ଗଡ଼ବାଣୀକିଲରୁ ରଣପୁର ବ୍ଲକ୍ ନମଗାରିଆ ଗଲା । ଶୋଭାଯାତ୍ରାରେ ଯାଇଥାଏ ପାଇକ ଆଖଡ଼ା । ସେ ଗାଁରେ ପହଞ୍ଚିବା ପରେ ଦେଖିଲେ ଗ୍ରାମକୁ ପ୍ରବେଶ କରୁଥିବା ସାହିର ଦୁଇପାର୍ଶ୍ୱର ଚାଳରେ ଗୋଟିଏ ଦଉଡ଼ି ଟଣା ହୋଇଥାଏ । ଯାଇଥିବା ପାଇକ ଆଖଡ଼ା ଦଳକୁ କୁହାଗଲା "ଟଣା ହୋଇଥିବା ଏହି ଦଉଡ଼ିକୁ ଉଡ଼ା ଶୂନମାରି ପାଇକ ଆଖଡ଼ା ଦଳରୁ କେହି ଏହାକୁ କାଟି ଛିଣ୍ଡାଇବ, ତେବେ ଯାଇ ଶୋଭାଯାତ୍ରା ଗ୍ରାମରେ ପ୍ରବେଶ କରିବ । ସେୟା ହିଁ ହେଲା । ଆମ ଗାଁ ଦଳର ପାଇକଗୁରୁ ଉଡ଼ାଶୂନ ମାରି ସେ ଦଉଡ଼ିକୁ ଖଣ୍ଡାରେ କାଟି ପକାଇଥିଲେ । ମୋର ସାନ ଜେଜେ ଆମ ଗାଁ ବରଯାତ୍ରୀ ଦଳର ନେତୃତ୍ୱ ନେଇଥିଲେ ।

ପଚାରିବାରୁ ସେ ମୋତେ କହିଥିଲେ ପାଇକାଳି ଗାଁରୁ ବିବାହ ଶୋଭାଯାତ୍ରାରେ ବର ପାଲିଙ୍କି ଅବା ଘୋଡ଼ାରେ ଯିବା ଏବଂ ପାଇକ ଆଖଡ଼ା ଦଳ ନେବା ସମ୍ମାନଜନକ ଥିଲା । ପ୍ରୋତ୍ସାହନ ଅଭାବରୁ ଏ ପ୍ରଥା କ୍ରମଶଃ କମିକମି ଯାଉଛି ।

ବରୁଣେଇ ତଳେ ପାଇକ ସ୍ମାରକୀସ୍ଥଳ ରାଷ୍ଟ୍ରପତି ଉଦଘାଟନ କରିଛନ୍ତି । ଏଠାରେ ପାଇକ ସମରକଳା ଏକାଡ଼େମୀ, ମ୍ୟୁଜିଅମ ଆଦି ବହୁବିଧ କାର୍ଯ୍ୟକ୍ରମର ଯୋଜନା ରହିଛି । କେନ୍ଦ୍ର ସରକାର ଏଥିପାଇଁ ଶହେ ଏକର ଜାଗା ଚାହିଁଥିବା ବେଳେ ରାଜ୍ୟ ସରକାର ଖୋର୍ଦ୍ଧା ମୌଜା ଖାତା ନଂ ୩୪୦ ର ପ୍ଲଟ୍ ନଂ ୧୪୪୫ ଓ ପ୍ଲଟ୍ ନଂ ୮୨୪/୧୦୦୧ରୁ ମୋଟ ଏ ୯.୬୮୫ ଜାଗା ଦେବାକୁ ଘୋଷଣା କରି ସେଥିମଧ୍ୟରୁ ଇଂଚେ ମଧ୍ୟ ଜାଗା ଦେଇନାହାନ୍ତି । ଜମି ମାପଚୂପ ବେଳେ ଦୁଇଟି ସଂସ୍ଥା ନିରୂପିତ ଜାଗାର କିଛି ଅଂଶ ମାଡ଼ି ବସିଥିବା ଜଣାପଡ଼ିଲା । ଏଯାବତ୍ ସେମାନଙ୍କୁ ସରକାର ଉଚ୍ଛେଦ କରିପାରନାହାନ୍ତି । ବରଂ ଉକ୍ତ ସରକାରୀ ଜାଗାରେ ସରକାରଙ୍କ ଦ୍ୱାରା ୧୯୯୮ ମସିହାରେ ଡିଆରଡିଏ କାର୍ଯ୍ୟାଳୟ ପାଇଁ ୫୦ ଲକ୍ଷ ଟଙ୍କା ବ୍ୟୟରେ ହୋଇଥିବା କୋଠାକୁ ଏକ ସଂସ୍ଥା ଗତ ୨୦୨୧ ଫେବ୍ରୁଆରୀ ୨ ଓ ୩ ତାରିଖରେ ଭାଙ୍ଗି ମାଟିରେ ମିଶାଇ ଦେଇଛି । ଏହା ସରକାରଙ୍କୁ ଏକ ଆହ୍ୱାନ । ଏହି କୋଠା ପାଇକ ସ୍ମାରକୀସ୍ଥଳରେ ଥାଇ କୌଣସି ଏକ କାର୍ଯ୍ୟରେ ଲାଗିପାରିଥାଆନ୍ତା । ଏହି କୋଠାର ଆନୁମାନିକ ମୂଲ୍ୟ ଦେଢ଼ କୋଟି ଟଙ୍କାରୁ ଉର୍ଦ୍ଧ୍ୱ ହେବ । ଏହା ଭାଙ୍ଗିଦେଇଥିବାରୁ କଳିଙ୍ଗ ପାଇକ ସଂଗଠନ ପକ୍ଷରୁ ପ୍ରତିବାଦ କରାଯାଇଛି ।

ପାଇକ ସ୍ୱାଭିମାନ ପାଇଁ ଲଢ଼େ । ସେ ଲଢ଼େ ନିଜ ରାଜ୍ୟ ପାଇଁ ଏବଂ ସମାଜ ପାଇଁ । ସେ ଦେଇ ଜାଣେ କିନ୍ତୁ ନେଇ ଜାଣେନା । ଆଜିର ପାଇକ ଦାୟାଦ ଲଢ଼ିବାର ବେଳ ଆସିଛି । ରାଜ୍ୟ ସରକାର କିଭଳି ସମରକଳା ଏକାଡେମୀ ଖୋଲିବେ ଏବଂ ପାଇକ ଆଖଡ଼ାକୁ କ୍ରୀଡ଼ାର ମାନ୍ୟତା ଦେଇ ତା'ର ବିକାଶ କରିବେ ସେ ଦିଗରେ ସଂଗ୍ରାମ ଜାରି ରଖିବାର ବେଳ ଆସିଛି । ଏ ପ୍ରସଙ୍ଗରେ ଖୋର୍ଦ୍ଧା ଗୁଜୁଜଙ୍ଗର ପଣ୍ଡିତ ହରିକୃଷ୍ଣ ପ୍ରଧାନଙ୍କର ଗୋଟିଏ କବିତା ମନେପଡ଼େ । ତାର ଶୀର୍ଷକ ହେଲା- 'ବୀର ଖୋରଧାର ଦୃପ୍ତ ପାଇକ' ।

"ଲାଲ ଖୋରଧାର ବୀର ଖୋରଧାର ଦୃପ୍ତ ପାଇକ ଆମେ,
ମୃତ୍ୟୁ ବୁକୁ ବି ରକ୍ତ ଦଲକା ଖସିପଡ଼େ ଆମ ନାମେ ।
ଦେହେ ବାଘଛାଲ ହାତେ ତଲୱାର ଅପରହସ୍ତେ ଢ଼ାଲ,
ବରୁଣାଇ ବନ ବ୍ୟାଘ୍ର ବାହିନୀ ଅରାତିର ମହକାଳ ।
ଧାବେ ଧାବେ ଆମ ବଜ୍ର ଗରଜେ ପ୍ରଳୟ ଆମର ନାମେ

ଗଛେ ଗଛେ ଛିଡ଼ା ଫାଶୀକାଠ ଆମ ନିର୍ଭୀକ ଅଭିମାନେ ।
ଏଇ ମାଟି ତଳେ ମାଙ୍କଡ଼ା ପଥର ରକ୍ତେ ଆମର ଲାଲ୍,
ଶତ୍ରୁ ନିପାତେ ଏ ଶୋଣିତ ଦିନେ ହୋଇଥିଲା ଝଲମଲ ।
ଆମରି ବାହୁରୁ ତୋଫାନ ଉଠିଛି ଧ୍ୱଂସ ପାଇଛି ରୂପ,
ଆମେ ଗାଇ ଗାଇ ଅଗ୍ନିମନ୍ତ୍ର ଜୀବନ ଦେଇଛୁ ଧୂପ ।
ଜଗବନ୍ଧୁର ବିଦ୍ରୋହ ଡାକେ ବୁକେ ଅମାନିଆ ଡାକେ,
ଇତିହାସ ବୁକେ କଲିଜା ରକତେ ଲେଖିଅଛୁ ଲାଲ୍‌ଦାଗେ ।
ସେହି ଗଉରବ ଜାତି ସଉରଭ କହିଯାଅ କାନେ କାନେ,
ଆମେ ହଜିବୁନି ଆମେ ଭାଜିବୁନି ଜାଗ୍ରତ ନିଜମାନେ ।" (୧୪)

ବାଣପୁର ଚାଷଙ୍ଗରାର କବି ୬ଯୋଗୀନ୍ଦ୍ରନାଥ ପାଇକରାୟ 'ଖୋରଧାଗଡ଼ର କ୍ଷୁଧା'ରେ ଲେଖିଛନ୍ତି

"ଚିହ୍ନିଛକି ଭାଇ ଖୋରଧାର ଭୂଇଁ ପ୍ରେରଣା ରହିଛି ଯହିଁ
ଥାପିଦେଲେ ପାଦ ଆସଇ ଉନ୍ମାଦ ଦେଶପ୍ରେମେ ସୀମା କାହିଁ ?
ବରୁଣେଇ ଗଡ଼ ଜାଣିନାହିଁ ଡର ପାଇକର ସିଦ୍ଧିକ୍ଷେତ୍ର,
ବାରବାଟୀଠାରୁ ବାଣପୁର ଯାଏଁ ବାନ୍ଧିଥିଲା ଏକ ସୂତ୍ର ।
ମାଟି ପଥରରେ ଉଷ୍ଣମ ରକ୍ତେ ମୁକ୍ତି ଇତିହାସ ଲେଖା
ଲିଭାଇ ପାରିନି ଦଣ୍ଡଭେଦ ରାଜ ଦୁର୍ମଦ ଆଗ୍ନେୟ ଶିଖା ।
ଉତ୍ତ୍ର-କଳିଙ୍ଗ କଙ୍ଗୋଦ-କୋଶଳ ରଖିଥିଲା ଯା'ର ଟେକ,
କହରେ ଦାୟାଦ ସହିକି ପାରିବୁ ଲୋହିତ ମାଟିର ଭୋକ ?" (୧୫)

ବରୁଣେଇ ଓ ତାହାର ପାଇକ ସଂସ୍କୃତି ଖୋର୍ଦ୍ଧାର ସ୍ୱତନ୍ତ୍ର ପରିଚୟ । ବରୁଣେଇକୁ ନେଇ ବହୁତ ପରିକଳ୍ପନା । ପାଇକ ସ୍ମାରକୀସ୍ଥଳ ନିକଟରେ ରାଜ୍ୟ ସରକାର ଏକ କୋଟି ଟଙ୍କା ବ୍ୟୟରେ ଏକ ସ୍ମାର୍ଟପାର୍କ ନିର୍ମାଣ ପାଇଁ ବିଜ୍ଞପ୍ତି ଘୋଷଣା କରିଛନ୍ତି । ବରୁଣେଇର ପୂର୍ବ ପାର୍ଶ୍ୱରେ ଆଇଆଇଟି ସ୍ଥାପିତ ହୋଇଛି । ଦୂରରୁ ଏହା ଆକର୍ଷିତ କରୁଛି । ବରୁଣେଇ ପାଇକ ସ୍ମାରକୀସ୍ଥଳରେ ପାଇକ ସଂଗ୍ରହାଳୟ, ଶହୀଦ ପ୍ରତିମୂର୍ତ୍ତି, ସମରକଳା ଏକାଡେମୀ ସ୍ଥାନ ପାଇବା ସହିତ ଗଡ଼ଖୋର୍ଦ୍ଧାରୁ ବରୁଣେଇ ପର୍ଯ୍ୟନ୍ତ ରୋପୱେ ଆଦି କରାଯିବାର ପରିକଳ୍ପନା ସ୍ଥାନ ପାଇଛି । ପାହାଡ଼ ତଳେ ଦୁଇଟି ଡାକବଙ୍ଗଳା ରହିଛି । ଏ କ୍ଷେତ୍ରରେ କେନ୍ଦ୍ର ଓ ରାଜ୍ୟ ଉଭୟ ସରକାରଙ୍କ ଆନ୍ତରିକତା ରହିଲେ ଦିନେ ଏହା ଓଡ଼ିଶା କାହିଁକି ସମଗ୍ର ଭାରତରେ ପ୍ରମୁଖ ପର୍ଯ୍ୟଟନସ୍ଥଳୀର ମାନ୍ୟତା ପାଇବ ଏଥିରେ ସନ୍ଦେହ ନାହିଁ ।

**ତଥ୍ୟଧାରିକା:**


୧. ରାଷ୍ଟ୍ରପତିଙ୍କ ହିନ୍ଦୀ ଅଭିଭାଷଣ ଇଣ୍ଟରନେଟରୁ ଉପଲବ୍ଧ

୨. P.I.B. New Delhi- dt. 20.7.2017

୩. ଦୈନିକ ସମୟ ତା. ୯.୨.୨୦୦୮

୪. Bakshi Jagabandhu- The path finder of freedom movement of India- Page-197

୫. ଲାଲମାଟିର କବିତା ପୃ-୨୧, ସଂକଳନ- ସତ୍ୟବାଦୀ ବଳିଆରସିଂହ

୬. ଅନାଇ ରହିଛି ଗଡ଼ ଗଡ଼ଖାଇ- ପୃ-୬୧- ସତ୍ୟବାଦୀ ବଳିଆରସିଂହ

୭. History of modern Orissa by K.C. Jena page 629 of the Paika Rebellion- A documentary study)

୮ ଯୁଗେ ଯୁଗେ ଓଡ଼ିଶାର ସାମରିକ ପରାକ୍ରମ- ରବୀନ୍ଦ୍ର ମୋହନ ସେନାପତି

୯(୧). ଯୁଗେ ଯୁଗେ ଓଡ଼ିଶାର ସାମରିକ ପରାକ୍ରମ- ରବୀନ୍ଦ୍ର ମୋହନ ସେନାପତି

୯(୨). Last days of Oriya Militia Dr. Parasanna Kumar Mishra

୧୦. କଳିଙ୍ଗ ରେଜିମେଣ୍ଟ କାହିଁକି ନୁହେଁ- ସମ୍ବାଦ ତା. ୨୬.୧୧.୨୦୨୦- ପ୍ରମୋଦ କୁମାର ପଣ୍ଡା

୧୧. History and blend at Barunei- Page-4 Bibhuti Barik.

୧୨. History and blend at Barunei- Page-5 Bibhuti Barik.

୧୩. Traditional Martial Practices of odisha- Illeana citaristi

୧୪. ବୀର ଖୋରଧାର ଦୃପ୍ତ ପାଇକ- (ଲାଲମାଟିର କବିତା ସଂକଳନ ପୃ-୨୩) ପଣ୍ଡିତ ହରିକୃଷ୍ଣ ପ୍ରଧାନ

୧୫. ଖୋରଧା ଗଡ଼ର କ୍ଷୁଧା (ଲାଲମାଟିର କବିତା ସଂକଳନ ପୃ-୭୬) ଯୋଗୀନ୍ଦ୍ରନାଥ ପାଇକରାୟ







ତତ୍କାଳୀନ ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀଙ୍କ ଦ୍ୱାରା ରାଜଧାନୀ ଦିଲ୍ଲୀରେ ପାଇକ ବିଦ୍ରୋହର ଦ୍ୱିଶତ ବାର୍ଷିକୀ ଉତ୍ସବର ଉଦଘାଟନ(ତା ୨୦-୦୭-୨୦୧୭)



ରାଷ୍ଟ୍ରପତି ରାମନାଥ କୋବିନ୍ଦଙ୍କ ଦ୍ୱାରା ବରୁଣେଇ ପାଦଦେଶରେ ପାଇକ ବିଦ୍ରୋହ ସ୍ମାରକୀର ଶିଳାନ୍ୟାସ (୮-୧୨-୨୦୧୯)



ବରୁଣେଇର ହନୁମାନ ମନ୍ଦିର



ମା'ଙ୍କ ଏଣ୍ଡୁରି ଭୋଗ

ବରୁଣେଇ ପ୍ରବେଶ ପଥରେ
ପାଇକ ସ୍ମୃତି ସ୍ମାରକୀ



ବରୁଣେଇ ପାଦଦେଶରେ ବାଣକାଣ୍ଡ ଗମ୍ବୁଜ



ବରୁଣେଇ ପାଦଦେଶରେ ଶିଶୁ ଉଦ୍ୟାନ





ଗଡ଼ଖୋର୍ଦ୍ଧାର ପଞ୍ଚପାଇକ



ବରୁଣେଇ ପାହାଡ଼ ଉପରେ ପ୍ରସ୍ତାବିତ
ବକ୍ସି ଜଗବନ୍ଧୁଙ୍କ ପ୍ରତିମୂର୍ତ୍ତି (ନମୁନା ଚିତ୍ର)



ଇତିହାସକୁ ସାଇତି ରଖିବା କାମରେ
ଯିଏ ଅହରହ ଲାଗିଥାନ୍ତି, ଇତିହାସର
ସତ୍ୟ ଓ ତଥ୍ୟକୁ ଅତୁଟ ରଖିବା
ଦିଗରେ ଯିଏ ଖୁବ୍ ସତର୍କ ଥା'ନ୍ତି
ଏବଂ ଇତିହାସ କହିଲେ ଯିଏ
କେବଳ ଲୋକକଥା ଆଉ ଶୁଣା
କଥାକୁ ବୁଝନ୍ତିନି,
ସେ ହେଲେ ଐତିହାସିକ
ସତ୍ୟବାଦୀ ବଳିଆରସିଂହ ।

ସେ କୁହନ୍ତି- ଇତିହାସ ସତ୍ୟ ଉପରେ
ଆଧାରିତ ଏବଂ ତଥ୍ୟ ସହିତ
ସମ୍ପର୍କିତ । ତେଣୁ ତାଙ୍କର ସବୁ
ଲେଖା ଗବେଷଣାଧର୍ମୀ । ଏହି
କାରଣରୁ ଅନ୍ୟ ଇତିହାସକାରଙ୍କ
ଭିତରେ ସେ ବାରି ହୋଇପଡ଼ନ୍ତି ।

KHORDHA ITIHASARA ANTUDISHALA

**BARUNEI**

Rs. 120/-